# ପ୍ରଫେସର କୁଞ୍ଜବିହାରୀ ତ୍ରିପାଠୀ :

# ଅଭିନନ୍ଦନ ଗ୍ରନ୍ଥ



୨୦-୬-୯୩

ପ୍ରଫେସର କୁଞ୍ଜବିହାରୀ ତ୍ରିପାଠୀ

# ଅଭିନନ୍ଦନ ଗ୍ରନ୍ଥ

ସମ୍ପାଦନା :

ଡଃ ଖଗେଶ୍ୱର ମହାପାତ୍ର
ଡଃ ସୁଦର୍ଶନ ଆଚାର୍ଯ୍ୟ
ଡଃ ଦାଶରଥି ଦାସ
ଡଃ ବାଉରୀବନ୍ଧୁ କର

# ସମ୍ବର୍ଦ୍ଧନା ସମିତି

ପୃଷ୍ଠପୋଷକ : ପ୍ରଫେସର ରେବତୀଚରଣ ଦାସ
ସଭାପତି : ଡଃ ଖଗେଶ୍ୱର ମହାପାତ୍ର
ଉପ-ସଭାପତି : ଡଃ ସୁଦର୍ଶନ ଆଚାର୍ଯ୍ୟ
ସମ୍ପାଦକ : ଡଃ ଦାଶରଥି ଦାସ
ସହ-ସମ୍ପାଦକ : ଡଃ ବାଉରୀବନ୍ଧୁ କର
ସଭ୍ୟ : ଡଃ ଜଗନ୍ନାଥପ୍ରସାଦ ଦାସ
ଶ୍ରୀ ରବୀନ୍ଦ୍ରମୋହନ ସେନାପତି
ଡଃ ସାବିତ୍ରୀ ରାଉତ
ଡଃ ରେଖା ମହାନ୍ତି
ଡଃ ପ୍ରତିଭା ଶତପଥୀ
ଡଃ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ
ଡଃ କରୁଣାସାଗର ବେହେରା
ଡଃ ଶରତଚନ୍ଦ୍ର ପ୍ରଧାନ
ଡଃ ବାସୁଦେବ ସାହୁ
ଡଃ ସୌଭାଗ୍ୟକୁମାର ମିଶ୍ର
ଶ୍ରୀ ଶରତକୁମାର ମହାନ୍ତି
ଡଃ କୃଷ୍ଣଚନ୍ଦ୍ର ଭୂୟାଁ
ଶ୍ରୀ ବରେନ୍ଦ୍ରକୃଷ୍ଣ ଧଳ
ଡଃ ମହେଶପ୍ରସାଦ ଦାସ



# ପ୍ରସ୍ତାବନା

ଯେଉଁ ମୁଷ୍ଟିମେୟ ଅଧ୍ୟାପକଙ୍କ ଆନ୍ତରିକ ନିଷ୍ଠା, ସତ୍ ପ୍ରବୃତ୍ତି ଓ ଉଜ୍ଜ୍ୱଳ ବ୍ୟକ୍ତିତ୍ୱ ପ୍ରଭାବରୁ ଓଡ଼ିଆ ବିଭାଗର ସମ୍ମାନ ଅଛି ତନ୍ମଧ୍ୟରୁ ଅନ୍ୟତମ ହେଉଛନ୍ତି ବହୁଶ୍ରୁତ ଡ଼ଃ କୁଞ୍ଜବିହାରୀ ତ୍ରିପାଠୀ । ସେ ବିଭାଗର ବରିଷ୍ଠ ପ୍ରଫେସର ମାତ୍ର ନୁହନ୍ତି, ବୟୋଜ୍ୟେଷ୍ଠ ମଧ୍ୟ । ତାଙ୍କୁ ସଶ୍ରଦ୍ଧ ସମ୍ବର୍ଦ୍ଧନା ଜ୍ଞାପନ କରିବାକୁ ଗୋଟିଏ ଅତୃପ୍ତ ଆକାଙ୍କ୍ଷା ଆମ ସାଂସ୍କୃତିକ ପରିମଣ୍ଡଳରେ ଅନେକ ଦିନରୁ ଘୂରି ବୁଲୁଥିଲା । ଆନନ୍ଦର କଥା ଯେ, ଏମଧ୍ୟରେ ଅନେକ କୃତବିଦ୍ୟ ଅଧ୍ୟାପକ ସମ୍ବର୍ଦ୍ଧିତ ହେଲେଣି । କିନ୍ତୁ ଡ଼ଃ ତ୍ରିପାଠୀଙ୍କର ଅନେକ ପ୍ରିୟଛାତ୍ର ବର୍ତ୍ତମାନ ଥିଲେ ହେଁ ଦୃଢ଼ ସଂଗଠନ ଅଭାବରୁ ତାଙ୍କ ସମ୍ବର୍ଦ୍ଧନା ବ୍ୟବସ୍ଥା ହୋଇ ପାରି ନଥିଲା । ଅଧିକନ୍ତୁ ତାଙ୍କର ଆତ୍ମସଙ୍କୋଚ ଏତେ ବେଶି ଯେ, ଏ କ୍ଷେତ୍ରରେ ତାଙ୍କ ସମର୍ଥ ବ୍ୟକ୍ତିଗତ ଉଦ୍ୟମର ଧୃଷ୍ଟତା କଥା ଭାବି ହୁଏ ନାହିଁ । ଅନେକେ କିନ୍ତୁ ସର୍ବାନ୍ତଃକରଣରେ ତାଙ୍କୁ ଭକ୍ତିଅର୍ଘ୍ୟ ନିବେଦନ କରିବାକୁ ଚାହୁଁଥିଲେ, ପ୍ରକାଶ୍ୟରେ ଶ୍ରଦ୍ଧା ଜ୍ଞାପନ କରିବାକୁ ଭାବୁଥିଲେ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗରେ ସେହି ସଞ୍ଚିତ ଆକାଙ୍କ୍ଷାଟି ଚରିତାର୍ଥ ହେଲା । ସେଦିନ ଡ଼ଃ ଖଗେଶ୍ୱର ମହାପାତ୍ର ଏହି ବିଭାଗକୁ Visiting Professor ଭାବରେ ଆସିଥାନ୍ତି, କ୍ଲାସ ସାରି ବସିଥାନ୍ତି ମୁଖ୍ୟଙ୍କ ଅଫିସ୍‌ରେ । ଏପ୍ରିଲ୍ ମାସର ପ୍ରଥମ ସପ୍ତାହ ବୋଧ-ହୁଏ; କଥା ଉଠିଲା ପ୍ରିୟ ଛାତ୍ରମାନଙ୍କ ତରଫରୁ ଡ଼ଃ କୁଞ୍ଜବିହାରୀ ତ୍ରିପାଠୀଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଯିବ । ସେଇଠି ସେହି ମୁହୂର୍ତ୍ତରେ ଅନେକ ଦିନର ପୁଞ୍ଜୀଭୂତ ଆବେଗ, ଆକାଙ୍କ୍ଷା, ଉତ୍ସାହ ଓ ଆଗ୍ରହ ସାକାର ହୋଇଗଲା, ମୂର୍ତ୍ତି ପରିଗ୍ରହ କଲା । ଅଚିରେ ଡ଼ଃ ଖଗେଶ୍ୱର ମହାପାତ୍ର, ଡଃ ସୁଦର୍ଶନ ଆଚାର୍ଯ୍ୟ, ଡ଼ଃ ଦାଶରଥି ଦାସ ଓ ଡଃ ବାଞ୍ଛାବନ୍ଧୁ କରଙ୍କୁ ନେଇ ସମ୍ବର୍ଦ୍ଧନା ସମିତିଟିଏ

ଗଡ଼ାଗଲା, ବିଭାଗର ଡଃ ଅଶ୍ୱିନୀକୁମାର ପଣ୍ଡା, ଡଃ ପୂର୍ଣ୍ଣଚନ୍ଦ୍ର ମିଶ୍ର ଓ ଡଃ ଦେବୀପ୍ରସନ୍ନ ପଟ୍ଟନାୟକ ମଧ୍ୟ ଆନନ୍ଦିତ ହେଲେ ଓ କଥାଟାକୁ ସମର୍ଥନ ଜଣାଇଲେ । ସ୍ଥିର ହେଲା ପ୍ରତ୍ୟାସନ୍ନ ଗ୍ରୀଷ୍ମାବକାଶରେ ସମ୍ବର୍ଦ୍ଧନା ସଭା ଆୟୋଜିତ ହେବ । କୁଳପତି ପ୍ରଫେସର ରେବତୀଚରଣ ଦାସ ସ୍ୱତଃପ୍ରବୃତ୍ତ ଭାବରେ ସମିତିର ପୃଷ୍ଠପୋଷକତା କରିବାକୁ ଆଗେଇ ଆସିଲେ । ଆଉ ଓଡ଼ିଶାର ଅନେକ ଗଣ୍ୟମାନ୍ୟ ବ୍ୟକ୍ତି ସମିତିର ସଦସ୍ୟ ପଦ ସ୍ୱୀକାର କରିନେଲେ । ସାହାଯ୍ୟ ଓ ସହଯୋଗର ଅଭାବ ଘଟିଲା ନାହିଁ । ଅର୍ଥ ମଧ୍ୟ ସମସ୍ୟା ହୋଇ ଦେଖାଦେଲା ନାହିଁ । ଅନ୍ୟୂନ ଶହେଟି ଟଙ୍କା ସାହାଯ୍ୟ ଦେଇ ଏହି ମହତ୍ କାର୍ଯ୍ୟରେ ସହଯୋଗ କରିବା ପାଇଁ ସମିତି ପକ୍ଷରୁ ଓଡ଼ିଶାର ବହୁ ବିଶିଷ୍ଟ ବ୍ୟକ୍ତି ଓ ଓଡ଼ିଆ ଅଧ୍ୟାପକଙ୍କୁ ଅନୁରୋଧପତ୍ର ପଠାଗଲା । ହାତେ ହାତେ ଫଳ ମିଳିଲା । କେବଳ ଡ଼କ୍ଟର ତ୍ରିପାଠୀଙ୍କର ଅନୁରାଗୀ ଛାତ୍ର ନୁହନ୍ତି, ତାଙ୍କ ଛାତ୍ରଙ୍କର ଛାତ୍ରମାନେ ମଧ୍ୟ ବହୁସଂଖ୍ୟାରେ ମନିଅର୍ଡ଼ର ଯୋଗେ ଟଙ୍କା ପଠାଇ ସଦୁଦ୍ୟମଟିକୁ ଉତ୍ସାହିତ କରିଦେଲେ । ଆଜିର ଏହି ସଭା ଓ ଅଭିନନ୍ଦନ ଗ୍ରନ୍ଥ ସେହି ସ୍ୱତଃସ୍ଫୂର୍ତ୍ତ ସାହାଯ୍ୟ ଓ ସହଯୋଗର ସଦ୍ୟ ଅବଦାନ । ଏହି ଅବକାଶରେ ସମ୍ବର୍ଦ୍ଧନା ସମିତି ଏ ସମସ୍ତଙ୍କୁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି, ଯେଉଁମାନେ କୌଣସି କାରଣରୁ ଉଦାସୀନ ରହିଛନ୍ତି ତାଙ୍କୁ ବି ଆନ୍ତରିକ ଧନ୍ୟବାଦ ଜଣାଉଛି, ସେମାନେ ସେହିନ ସମିତିକୁ କିଛି କମ୍ ଆଶାନ୍ୱିତ କରାଇ ନାହାନ୍ତି ! ଏତିକରେ କିନ୍ତୁ ସମିତି କୃତାର୍ଥ ହେଉନାହିଁ । ସାହାଯ୍ୟ ଲବ୍ଧ ଟଙ୍କାରେ ଡ଼କ୍ଟର ତ୍ରିପାଠୀଙ୍କ ସମ୍ମାନାର୍ଥେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ଅନର୍ସରେ ପ୍ରଥମ ସ୍ଥାନ ଅଧିକାର କରୁଥିବା ଛାତ୍ରଟି ପାଇଁ ପ୍ରତିବର୍ଷ ଗୋଟିଏ ସ୍ୱର୍ଣ୍ଣପଦକ ବ୍ୟବସ୍ଥା କରିବାକୁ ଆମର ସ୍ୱପ୍ନ ଥିଲା । ଡ଼କ୍ଟର ତ୍ରିପାଠୀ ଥିଲେ ଓଡ଼ିଆ ବିଭାଗର ପ୍ରଥମ ପ୍ରଫେସର । ପିଲାଟି ଏମ୍. ଏ. ପଢ଼ିବାକୁ ଆସି ପୁଣ୍ୟଶ୍ଳୋକ ପ୍ରଫେସରଟିକୁ ମନେ ପକାଇବ ଓ ଉତ୍ସାହିତ ହେବ । ଆମ ସ୍ୱପ୍ନଟି ଚରିତାର୍ଥ ହେଲେ ସମିତି ଧନ୍ୟ ହେବ ।

ଅଭିନନ୍ଦନ ଗ୍ରନ୍ଥଟି ଥିଲା ଉଚ୍ଚାକାଙ୍‌କ୍ଷୀ । ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ ଓଡ଼ିଆ ବିଜ୍ଞଗର ପ୍ରବାଦପୁରୁଷ । ବିଶ୍ୱାସ ଓ ଆଚରଣରେ ଯଥାର୍ଥ ଶିକ୍ଷକଟିଏ ସେ, ଅଧିକନ୍ତୁ ଓଡ଼ିଆ ଅଭିଲେଖ ପାଠ ଓ ତା'ର ଲିପିତାତ୍ତ୍ୱିକ, ଭାଷାତାତ୍ତ୍ୱିକ ତଥା ଐତିହାସିକ ଅଧ୍ୟୟନ କ୍ଷେତ୍ରରେ ତାଙ୍କର ବିଚକ୍ଷଣ ଗବେଷଣା ଓଡ଼ିଶାରେ ପ୍ରବିରଳ ବିଷୟ । ଏ ଗବେଷଣା ପୁଣି ତାଙ୍କ ପାଇଁ କୃତିବିଶେଷରେ ମାତ୍ର ପର୍ଯ୍ୟବସିତ ନୁହେଁ, ଏକ ଅଶାନ୍ତ ମନୋବୃତ୍ତି ମଧ୍ୟ । ଆଜୀବନ ଗବେଷଣା ମନୋପ୍ରତିନ୍ୟାସଟିକୁ ସେ ଲାଳନ କରି ଆସିଛନ୍ତି, ଓଡ଼ିଆ ଭାଷା, ଅଭିଲେଖ ଓ ସାହିତ୍ୟ ସଂସ୍କୃତି ସମ୍ପର୍କରେ ଶତାଧିକ ପ୍ରବନ୍ଧ ଲେଖିଛନ୍ତି । ଆମେ ତେଣୁ ଅଭିନନ୍ଦନ ଗ୍ରନ୍ଥରେ ଏକ ପକ୍ଷରେ ଯେପରି ତାଙ୍କ ସୁକୃତି ସମୁଜ୍ଜ୍ୱଳ ସାଧନାପୂତ ଦୀର୍ଘ ଜୀବନର ଜୀବନ ସାଧନା, ସ୍ମୃତିକଥା, ଗବେଷଣା ଓ ସାହିତ୍ୟ ସୃଷ୍ଟି ଉପରେ ବିସ୍ତୃତ ଆଲୋଚନା ପ୍ରକାଶ କରିବାକୁ ଚାହିଁଥିଲୁ । ଠିକ୍ ସେପରି ଅନ୍ୟପକ୍ଷରେ ଓଡ଼ିଶାର ଶିଳ୍ପ ସାହିତ୍ୟ ସଂସ୍କୃତି ସଂକ୍ରାନ୍ତ କେତୋଟି ପ୍ରବନ୍ଧ ପ୍ରକାଶ କରିବାକୁ ବ୍ୟବସ୍ଥା କରିଥିଲୁ । ଗ୍ରନ୍ଥଟି ହୋଇଥାନ୍ତା ଡଃ ତ୍ରିପାଠୀଙ୍କ ବ୍ୟକ୍ତିତ୍ୱର ଏକ ଯୋଗ୍ୟ ସଙ୍କଳନ । କିନ୍ତୁ ପ୍ରତ୍ୟାଶିତ ଉତ୍ସାହ ସୁଲଭ ହେଲା ନାହିଁ । କାରଣ ହୋଇପାରେ ଅନେକ । ପ୍ରଥମ କାରଣଟି ସମୟାଭାବ ନିଶ୍ଚୟ । ଦ୍ୱିତୀୟ କାରଣଟି ପାଇଁ ସମ୍ପାଦକ ଦାୟୀ ରହିପାରନ୍ତି, ସେ ହୁଏତ ଅନବଧାନତାବଶତଃ ଉପଯୁକ୍ତ ଉତ୍ସାହୀ ଲୋକଙ୍କୁ ଲେଖିବାକୁ ଅନୁରୋଧ କରି ପାରିନାହିଁ । ଡଃ ତ୍ରିପାଠୀଙ୍କ ରଚନାର ମୂଲ୍ୟାୟନ ମଧ୍ୟ ସହଜସାଧ୍ୟ ବ୍ୟାପାର ନୁହେଁ । ଓଡ଼ିଆ ଲିପି ଓ ଭାଷାର ବିବର୍ତ୍ତନ ଅଧ୍ୟୟନ କ୍ଷେତ୍ରରେ ଥିବା ପ୍ରଚଳିତ ଧାରଣାକୁ ଉତ୍‌ଖାତ କରି ଯେ ଯେଉଁ ନୂଆ ତଥ୍ୟ ଓ ବିଷୟର ଉପସ୍ଥାପନ କରିଛନ୍ତି ତାହାକୁ ଅନୁଧାବନ କରିବାର ସାମର୍ଥ୍ୟ କାହିଁ ? ଆଜି ଓଡ଼ିଆ ଗବେଷଣା ଯେଉଁ ଶୋକାବହ ସ୍ତରରେ ପହଞ୍ଚିଛି, ସେଠାରେ ଓଡ଼ିଆ ଲିପି ଓ ଭାଷା ଗବେଷଣା କ୍ଷେତ୍ରରେ ଡ଼ଃ ତ୍ରିପାଠୀଙ୍କ ଗବେଷଣାତ୍ମକ 'The Evolution of Oriya Language and Script' ଗ୍ରନ୍ଥଟି କେବଳ ପ୍ରଥମ ଗ୍ରନ୍ଥ ହୋଇ ରହିବ ନାହିଁ ବୋଧହୁଏ ହେବ ସର୍ବଶେଷ ଗ୍ରନ୍ଥ । ଅଧିକନ୍ତୁ ତାଙ୍କର ପ୍ରବନ୍ଧଗୁଡ଼ିକର ପ୍ରତିନିଧିସ୍ଥାନୀୟ ସଙ୍କଳନ

ମଧ୍ୟ ଅନୁପସ୍ଥିତ, ତେଣୁ ସେଗୁଡ଼ିକୁ ସଂଗ୍ରହ କରି ତତ୍ ସଂକ୍ରାନ୍ତ ଆଲୋଚନା ଉପସ୍ଥାପନ କରିବାକୁ କେହି ହୁଏତ ସୁଯୋଗ ପାଇ ପାରି ନାହାନ୍ତି । ତଥାପି ଆମକୁ ଯେଉଁ ସମୟୋଚିତ ଉତ୍ସାହ ଓ ସାଧୁ ସହଯୋଗ ମିଳିଛି ତାହା କମ୍ ଆନନ୍ଦର କଥା ନୁହେଁ । ଲେଖକମାନଙ୍କୁ ଆମର କୃତଜ୍ଞତା ଜଣାଉଛୁ ଓ ଆମ ତରଫରୁ ତଥା ସେମାନଙ୍କ ତରଫରୁ ଏହି ମାଧୁକରିଲବ୍ଧ ସାରସ୍ୱତ ସଂପଦଟିକୁ ପୂଜ୍ୟ ଶିକ୍ଷାଗୁରୁ ଡ଼ଃ କୁଞ୍ଜବିହାରୀ ତ୍ରିପାଠୀଙ୍କ ଶ୍ରୀଚରଣରେ ଶ୍ରଦ୍ଧା ଉପହାର ଭାବରେ ଅର୍ପଣ କରୁଛୁ । ସେ ସାଦର ଗ୍ରହଣ କରନ୍ତୁ ।

ଏହି ଅବକାଶରେ ସମିତି ଆମର ବରେଣ୍ୟ ପୃଷ୍ଠପୋଷକଗଣ, ଉତ୍ସାହୀ ସଭ୍ୟବୃନ୍ଦ ଓ ଆଜିର ସମ୍ମାନିତ ଅତିଥି ମାନ୍ୟବର ଗଣଶିକ୍ଷାମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ଘଡ଼େଇ ତଥା ମୁଖ୍ୟ ପ୍ରଧାନ ବକ୍ତା ପ୍ରଫେସର ବଂଶୀଭୂଷଣ ଦାସଙ୍କୁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି । ଅଭିନନ୍ଦନ ଗ୍ରନ୍ଥ ପ୍ରକାଶନ କ୍ଷେତ୍ରରେ ସମୁତ୍ସାହୀ ଡ଼ଃ ପୂର୍ଣ୍ଣଚନ୍ଦ୍ର ମିଶ୍ର ଯେପରି ପୂର୍ଣ୍ଣପ୍ରାଣରେ ସହଯୋଗ କରିଛନ୍ତି ଓ ସନ୍ତୋଷ ପ୍ରିଣ୍ଟର୍ସର ରୁଚିଶୀଳ କର୍ତ୍ତା ଅଭିମନ୍ୟୁ ପାତ୍ରୀ ଯେପରି ଅନୁକୂଳ ତତ୍ପରତା ପ୍ରକାଶ କରିଛନ୍ତି, ତାହା ଭୁଲିବାର କଥା ନୁହେଁ । ଦୁହିଁଙ୍କୁ ଧନ୍ୟବାଦ ଦେଉଛୁ ।

ଭଞ୍ଜବିହାର
ତା ୨୦-୭-୧୯୯୩

**ଦାଶରଥି ଦାସ**
ସଂପାଦକ
ସମ୍ବର୍ଦ୍ଧନା ସମିତି

# ଡଃ କୁଞ୍ଜବିହାରୀ ତ୍ରିପାଠୀଙ୍କ ଜୀବନର
# ଉଲ୍ଲେଖନୀୟ ଘଟନାବଳୀ

**ଜନ୍ମସ୍ଥାନ ଓ ସମୟ :**

ପଥୁରିପଡ଼ା, ବାଙ୍କୀ, କଟକ

ମିଥୁନ ୧୩ ଦିନ ୧୩୧୭ ସାଲ ୧୯୧୦ (ଜାତକ ଅନୁଯାୟୀ)

୪ ସେପ୍‌ଟେମ୍ବର, ୧୯୧୧ (ସାର୍ଟିଫିକେଟ୍ ଅନୁଯାୟୀ)

**ଶିକ୍ଷା :**

ବି. ଏ.— ସଂସ୍କୃତ ଅନର୍ସ ପ୍ରଥମ ଶ୍ରେଣୀରେ ପ୍ରଥମ
ପାଟନା ବିଶ୍ୱବିଦ୍ୟାଳୟ ୧୯୩୨ } ସ୍ୱର୍ଣ୍ଣପଦକ ପ୍ରାପ୍ତ
ଏମ୍. ଏ.—ପ୍ରଥମ ଶ୍ରେଣୀରେ ପ୍ରଥମ ,, ୧୯୩୪ }

ବି. ଏଲ୍.—ଦ୍ୱିତୀୟ ଶ୍ରେଣୀ ,, ୧୯୩୭

ପିଏଚ୍. ଡି.—ଭାରତୀୟ ଆର୍ଯ୍ୟଭାଷା—ଲଣ୍ଡନ ବିଶ୍ୱବିଦ୍ୟାଳୟ ୧୯୫୩

**ବୃତ୍ତି :**

| | |
|---|---|
| ଶିକ୍ଷା ବିଭାଗରେ ଯୋଗଦାନ ପୂର୍ବରୁ ଓକିଲାତି | ୧୯୩୭-୩୮ |
| ରେଭେନ୍‌ସା କଲେଜରେ (ଅସ୍ଥାୟୀ ଅଧ୍ୟାପକ) | ୧-୭-୧୯୩୮ |
| ସ୍ଥାୟୀ ଅଧ୍ୟାପକ | ୧୦-୭-୧୯୩୯ |
| ଆସିଷ୍ଟାଣ୍ଟ ପ୍ରଫେସର | ୧-୭-୧୯୪୫ |
| ଲଣ୍ଡନକୁ ଗବେଷଣା ପାଇଁ ଯିବା ନିମନ୍ତେ ଛୁଟିପ୍ରାପ୍ତି | ୨୭-୯-୧୯୪୯— ୨୯-୧୧-୧୯୫୧ |
| ଅଧ୍ୟକ୍ଷ, ବଲାଙ୍ଗୀର କଲେଜ | ୨୫-୧-୧୯୫୪ |

ପ୍ରଫେସର ଓଡ଼ିଆ ଓ ସଂସ୍କୃତ ବିଭାଗ,
ରେଭେନ୍ସା କଲେଜ ୨୪-୨-୧୯୫୫

ଅଧ୍ୟକ୍ଷ, ଗଙ୍ଗାଧର ମେହେର କଲେଜ ୧୯୬୨

ସରକାରୀ ଚାକିରିରୁ ଅବସର ୧୯୬୮

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗରେ
ପ୍ରଫେସର ଓ ମୁଖ୍ୟ ୧୯୬୯-୧୯୭୨

କଟକ ଥୋରିଆ ସାହି ମହିଳା ମହାବିଦ୍ୟାଳୟର ଅଧ୍ୟକ୍ଷ ୧୯୮୧

## ପ୍ରସିଦ୍ଧ ଅନୁଷ୍ଠାନର ସଭ୍ୟ ଓ ପ୍ରାକ୍ତନ ସଭ୍ୟ :

1. Royal Asiatic Society, London
2. Philological Society, London
3. Asiatic Society, Calcutta
4. Linguistic Society of India, Poona
5. Linguistic Circle, Delhi
6. Orissa Sahitya Akademi, Bhubaneswar
7. Advisory Council for Museum, Archives & Archaeology, Bhubaneswar
8. Education Committee, Board of Secondary Education, Orissa
9. Orissa Sanskrit Parishad & Sanskrit Council, Puri
10. Editorial Board of J. O. H. R. S. Bhubaneswar
11. Union for Study of Great Religions of the World
12. Utkal Sahitya Samaj (Life Member & Ex-Vice President)
13. Visva-Sanskrit Parishad, Cuttack Branch
14. Senate of the Utkal University
15. } Jnana Vignana Parishad, Academic Council including its
16 } Library Committee, Utkal University
17. Youth Hostel Association India

୧୮. ପ୍ରତିଷ୍ଠାତା : ଓଡ଼ିଶା ଭାଷା ସମିତି

## UNIVERSITY OF POONA

## SEMINAR IN PRAKRIT STUDIES, JUNE 23-27, 1969.



Left to Right : Sitting : 1. R. N. Dandekar 2. M. V. Patwardhan 3. T. N. Dave 4. S. M. Katre 5. N. G. Suru 6. P. L. Vaidya 7. H. V. Pataskar (V. C.) 8. Sukumar Sen 9. A. N. Upadhye 10. Maheshwar Neog 11. K. B. Tripathi 12. N. Tatia 13. A. M. Ghatge.

Standing : (1st Row) 1. G. V. Devasthali 2. V. M. Kulkarni 3. E. D. Kulkarni 4. G. S. Gai 5. N. V. Vaidya 6. Ratna Shriyan 7. Godavari Shahane 8. P. M. Upadhye 9. H. S. Ananthanarayan 10. M. A. Mehendale 11. M. G. Panse 12. H. C. Bhayani 13. R. V. Dixit.

Standing : (2nd Row) : 1. V. G. Rahurkar 2. K. P. Jog. 3. V. N. Jha 4. M. S. Randive 5. K. S. Arjunwadkar 6. D. G. Joshi 7. M. G. Dhadphale 8. P. N. Mulay 9. V. T. Zambare 10. S. D. Laddu.

# ଆଚାର୍ଯ୍ୟଚୈତନ୍ୟ-ବପୁଷା

**ଦାଶରଥି ଦାସ**

ଡ଼ଃ କୃଷ୍ଣଚନ୍ଦ୍ର ତ୍ରିପାଠୀ ନିଜର ଚାରିତ୍ରିକ କୌଳିନ୍ୟ ଓ ଆଦର୍ଶ ବ୍ୟକ୍ତିତ୍ୱ ବଳରେ ଏବେ ଦୀପ୍ତିମାନ୍ । ନିଜ ମହିମାରେ ନିଜେ ପ୍ରତିଷ୍ଠିତ । ଲେଖକ ତାଙ୍କୁ ୧୯୫୩ରୁ ଦେଖି ଆସୁଛି । ସେ ଦିନୁଦିନ ନିରଭିମାନ ସଦାଚରଣନିଷ୍ଠ ଆଚାର୍ଯ୍ୟ ଭାବରେ ତାଙ୍କର କଲ୍ୟାଣମୟ ସ୍ନିଗ୍ଧ ପ୍ରଭାବ ବଢ଼ାଇ ଚାଲିଛନ୍ତି । ସେ ଆଜି ବୟସରେ ଆମର ପିତୃପ୍ରତିମ, ବିଦ୍ୟାରେ ତଥା ବିଶ୍ୱାସ ଓ ଆଚରଣରେ ଗୁରୁପଦାରୂଢ଼ ଯଥାର୍ଥ ଶିକ୍ଷକ । ତାଙ୍କ ଚରିତ ଓ ସାଧନା ଅନନୁକରଣୀୟ । ନୈତିକ ମୂଲ୍ୟବୋଧ ବିପର୍ଯ୍ୟୟ ଓ ଆଧ୍ୟାତ୍ମିକ ସଙ୍କଟର ଆଜି ଏହି ଦୁର୍ଦ୍ଦିନରେ ଆମେ ତାଙ୍କ ଜୀବନରେ ମନୁଷ୍ୟମହିମା ଓ ଶିକ୍ଷକ-ଆଦର୍ଶ ପ୍ରତ୍ୟକ୍ଷ କରିଥାଉ । ଏମିତି ଗୋଟିଏ ଗୋଟିଏ ବ୍ୟକ୍ତି ଜୀବିତ ଥିଲେ କେବଳ କୁଳ ପବିତ୍ର ହୁଏ ନାହିଁ କି ଜନନୀ କୃତାର୍ଥା ହୁଅନ୍ତି ନାହିଁ, ଧରଣୀ ବି ପୁଣ୍ୟବତୀ ହୁଏ ।

ଦିନେ ରେଭେନ୍ସା କଲେଜର ସାଂସ୍କୃତିକ ପରିବେଶ ଯେପରି ସମ୍ଭ୍ରାନ୍ତ ଥିଲା, ଠିକ୍ ସେପରି ତାର କୃତବିଦ୍ୟ ଶିକ୍ଷକକୁଳ ଥିଲେ ମର୍ଯ୍ୟାଦାବନ୍ତ । ଏବେ ଡ଼ଃ ସଦାଶିବ ମିଶ୍ର, ଡ଼ଃ ବଂଶୀଧର ସାମନ୍ତରାୟ, ଡ଼ଃ ଦେବେନ୍ଦ୍ରଚନ୍ଦ୍ର ମିଶ୍ର ଓ ପ୍ରଫେସର ବିଧୁଭୂଷଣ ଦାସ ଆଦିଙ୍କୁ ଦେଖିଲେ କି ପ୍ରଫେସର ବାମାଚରଣ ଦାସ ଓ ଡ଼ଃ ମହେନ୍ଦ୍ରକୁମାର ରାଉତଙ୍କୁ ମନେ ପକାଇଲେ ସେ ଦିନର ରେଭେନ୍ସା-ଆଭିଜାତ୍ୟ ବୁଝିହେବ । ରେଭେନ୍ସାର ଛାତ୍ର ହେବାରେ ଗର୍ବ ଓ ଗୌରବବୋଧ ଥିଲା, ଆମେ ଅଧିକାଂଶ ଆଜି ଯାହା ହୋଇଛୁ ତାହା ପଛରେ ରେଭେନ୍ସାର ଆଶୀର୍ବାଦ ବର୍ତ୍ତମାନ । ଡ଼ଃ କୃଷ୍ଣଚନ୍ଦ୍ର ତ୍ରିପାଠୀ ଥିଲେ ସେଦିନର ସେହି ସାରସ୍ୱତ ରଙ୍ଗସ୍ଥଳୀ ରେଭେନ୍ସା କଲେଜର ଅବିଭକ୍ତ

ଓଡ଼ିଆ ଓ ସଂସ୍କୃତ ବିଭାଗର ଅନ୍ୟତମ ସୁଯୋଗ୍ୟ ଅଧ୍ୟାପକ । ଯଥା-ସମୟରେ ହେଲେ ପ୍ରଫେସର ଓ ବିଭାଗୀୟ ମୁଖ୍ୟ । ସେ ଦିନର ଆଉ ଦୁଇଜଣ ବହୁଶ୍ରୁତ ଓଡ଼ିଆ ଅଧ୍ୟାପକଙ୍କ ନାମ ସ୍ୱତଃ ମନେ ପଡ଼େ । ଜଣେ ଶ୍ରୀ ଗୌରୀକୁମାର ବ୍ରହ୍ମା ଅନ୍ୟ ଜଣେ ଶ୍ରୀ ଜୟକୃଷ୍ଣ ମିଶ୍ର । ଏ ଦୁହେଁ ଆନୁଷ୍ଠାନିକ ଗବେଷଣା କରିନଥିଲେ ଅବଶ୍ୟ, କିନ୍ତୁ ପ୍ରଚୁର ପଢ଼ାପଢ଼ି କରି ଅଧ୍ୟାପନା ଗୁଣରେ ଯଥେଷ୍ଟ ଯଶସ୍ୱୀ ହୋଇଥିଲେ । ଶ୍ରୀ ବ୍ରହ୍ମା ଥିଲେ ସେଦିନର ବ୍ରହ୍ମା—ବିଶୁଦ୍ଧ ଓଡ଼ିଆ ଭାଷା ଥିଲା ତାଙ୍କ ରସନାଗ୍ର-ନର୍ତ୍ତକୀ—ଉଚ୍ଚାରଣ ତୀକ୍ଷ୍ଣ ଓ ମଧୁର, ଭଙ୍ଗୀଦୃପ୍ତ । ଯେ କୌଣସି ବିଷୟକୁ ସେ ସ୍ୱାଦିଷ୍ଟ କରି ପାରନ୍ତି । ବକ୍ତବ୍ୟ ବି ଥିଲା ପରିମିତ, ସଂସ୍କୃତ ଶ୍ଳୋକସ୍ନାତ ଓ ତୀକ୍ଷ୍ଣାଗ୍ର । ଆଜି ଆଉ ସେ ଗୌରୀକୁମାର ବ୍ରହ୍ମା ନାହାନ୍ତି । ଆକ୍ଷରିକ ଭାବରେ ବି ଅନୁପସ୍ଥିତ ଅଛନ୍ତି ଶ୍ରୀ ଜୟକୃଷ୍ଣ ମିଶ୍ର; ଶ୍ରଦ୍ଧାରେ ତାଙ୍କୁ କୁହାଯାଉଥିଲା ଜୟୀଷିଣ୍ଣୁ । କ୍ଲାସରେ ପଶିଗଲେ ସେ ଷଣ୍ଟିଏ ପରେ ମାତିଯାନ୍ତି, ନଈବଢ଼ି ପରି ବଢ଼ିଯାଏ ତାଙ୍କ ଭାଷଣର ଗତିବେଗ । ଭାସିଯାଏ କୋର୍ସ, ଭାସିଯାଏ ବି ପିରିୟଡ଼ଗୁଡ଼ିକର ଆନୁଷ୍ଠାନିକ ସୀମାବଦ୍ଧତା । ପିଲାଏ ବି ଭାସିଯାନ୍ତି; କେତେ ଶ୍ଳୋକ, କେତେ ରଙ୍ଗରସ କାହିଁ କେଉଁଠୁ ଆସି ଆଜାଡ଼ି ହୋଇପଡ଼େ । କ୍ଲାସ ଜମିଯାଏ । ଅଧିକନ୍ତୁ ନିଜ ରସିକତାରେ ନିଜେ ମୁଗ୍ଧ ହେବାର ନିର୍ବୋଧ ଭଙ୍ଗୀଟି ବି ତାଙ୍କର ଉପଭୋଗ୍ୟ । କୋର୍ସ କେବେ ତାଙ୍କର ସରେ ନାହିଁ, ଅଥଚ କାହାର କିଛି ଆପତ୍ତି ନଥାଏ । ତାଙ୍କ ଅରସିକ ଭାଷଣରୁ ଯେ କେହି ଉପକୃତ ହୋଇଥାନ୍ତି ଯଥେଷ୍ଟ । ଏ ଦୁହେଁ ଆମ ସାହିତ୍ୟବୋଧକୁ ବଢ଼ାଇଛନ୍ତି, ସଂସ୍କୃତ ସାହିତ୍ୟ ପ୍ରତି ଆକୃଷ୍ଟ କରାଇଛନ୍ତି । ଏ ଦୁହିଙ୍କ ପାଖରେ ଅନ୍ୟମାନେ ଅନୁଜ୍ଜ୍ୱଳ ଦିଶୁଥିଲେ । ଡଃ ତ୍ରିପାଠୀ ବି ବ୍ୟତିକ୍ରମ ନୁହନ୍ତି । ବରଂ ତାଙ୍କର ଅନେକ ମୁଦ୍ରାଦୋଷ ପିଲାଙ୍କ ପାଇଁ ଥିଲା ହାସ୍ୟକର । ସଦ୍ୟ ସେ ବିଲାତରୁ ଫେରିଥାନ୍ତି, ପିନ୍ଧିଥାନ୍ତି ସୁଟ୍ ଓ ଟାଇ; କିନ୍ତୁ ହାତରେ ଥାଏ ଛତା ଓ ଟିଣ ସୁଟ୍‌କେଶ୍ । ଏ ବିସଦୃଶ ବେଶପୋଷାକ ସାଙ୍ଗକୁ ତାଙ୍କ ଗମ୍ଭୀରମୂର୍ତ୍ତି ଘେରି ପାଖରେ ଗଢ଼ି ଉଠିଥାଏ ଅନେକ ଜନଶ୍ରୁତି ଓ କିମ୍ବଦନ୍ତୀ—ଯାହା ଲଣ୍ଡନଠାରୁ ପ୍ରଫେସରପଡ଼ା ପର୍ଯ୍ୟନ୍ତ ବିସ୍ତୃତ । ଆମେ ତାଙ୍କୁ ଦୂରରୁ ଦେଖୁ, ଏବେ ବି ସେ ଦିନର ତାଙ୍କ ଅବିଚଳିତ

ନର୍ଣ୍ଣିକ ସ୍ୱାଭିମାନୀ ପଦକ୍ଷେପ ମନେପଡ଼େ । ଆଜିଯାଏ ସେମିତି ନିଜ ଛଡ଼ା ସୁଟ୍‌କେଶ୍ ଧରି ନିଜ ବାଟରେ ଗ୍ଲଛନ୍ତି ଯେ, ନା ସ୍ତୁତିସ୍ତୁତିରେ ବିହ୍ୱଳ ହୋଇ ପଡ଼ୁଛନ୍ତି ନା ନିନ୍ଦା ଅପବାଦରେ ଘର୍ଣ୍ଣି ପଡ଼ୁଛନ୍ତି । ନଗଦ ମୂଲ୍ୟରେ ସେ ବିଶ୍ୱାସ ରଖି ନାହାନ୍ତି । ସେଇଥିପାଇଁ ତାଙ୍କ ପ୍ରଭାବ ବେଳକୁବେଳ ବଢ଼ିଛି । ଏମ୍. ଏ. ପଢ଼ିଲା ବେଳକୁ ଦେଖିଛି ତାଙ୍କ ପ୍ରତି ଲୋକଙ୍କ ଉପେକ୍ଷା ଓ ଉପହାସର ଅଧ୍ୟାୟ ଶେଷ ହେଲଣି । ଧୀରେ ଧୀରେ ସେ ନିଜର ଦୃଢ଼ତା ଓ ଦକ୍ଷତା ବଳରେ ବିଭାଗଟିକୁ ଆଗୁଉକୁ ନେଇଛନ୍ତି, ଅନନ୍ୟସାଧାରଣ ବ୍ୟକ୍ତିତ୍ୱ ଓ ଗମ୍ଭୀର ଅଧ୍ୟୟନ ଅଧ୍ୟାପନାର ପ୍ରଭାବରେ ଏକ ଆକର୍ଷଣୀୟ ଉଜ୍ଜ୍ୱଳତା ଅର୍ଜିଛନ୍ତି । ତାଙ୍କର କେତୋଟି ଦୁର୍ବଳତା ଅବଶ୍ୟ ଥିଲା । ଯେଉଁ ଯୁଗରେ ସାଧାରଣ ଜ୍ଞାନ ହେଉଛି ବ୍ରହ୍ମଜ୍ଞାନ ଓ ଧୂର୍ତ୍ତତା ଚତୁରତା, ସେହି ଯୁଗରେ ସେ ଅବାଞ୍ଛନୀୟ ମନେହେବା ବିଚିତ୍ର ନୁହେ । ଏହି ଦୁଇଟି ଗୁଣର ଅଭାବ ଯେବେ ନିର୍ବୋଧତା ହୁଏ, ତେବେ ସେ ନିର୍ବୋଧ ଥିଲେ; ଅନ୍ୟଥା ନୁହେଁ । ଧବଳ ସରଳତାହିଁ ତାଙ୍କର ନିର୍ବୋଧତା—ବଡ଼ ଅନଟକୋଣ, ଏହା ବିଜ୍ଞତାର ପରିପନ୍ଥୀ ନୁହେଁ, ବରଂ ଅବିଚ୍ଛେଦ୍ୟ ଅଂଶ । ଆରିଷ୍ଟଟଲ ଏହାକୁ ଲକ୍ଷ୍ୟକରି କହିଛନ୍ତି, "There is a foolish corner even in the brain of the sage." ଏମାନେ ଠକି ଯାଇଥାନ୍ତି, କିନ୍ତୁ କେବେ କାହାକୁ ଠକନ୍ତି ନାହିଁ । ଡଃ ତ୍ରିପାଠୀ ସରଳ କିନ୍ତୁ ଅସାବଧାନ ନୁହନ୍ତି । ବରଂ ମାତ୍ରାତିରିକ୍ତ ଭାବରେ ସାବଧାନ । ଗୋଟିଏ ଘଣ୍ଟା କାଳେ କେତେବେଳେ ବନ୍ଦ ହୋଇଯିବ, ସେଥିପାଇଁ ସେ ପଢ଼ିଲାବେଳେ ଦୁଇଟି ଘଣ୍ଟା ରଖିଥାନ୍ତି ଇତ୍ୟାଦି ଇତ୍ୟାଦି । ସାବଧାନତାକୁ ନିର୍ବୋଧତା କହିଲେ କ'ଣ କରାଯାଏ ? ତାଙ୍କର ଅନ୍ୟ ଦୁର୍ବଳତାଟି କଠିନ ନିୟମନିଷ୍ଠା - ସେ ନିୟମ ମନୁସ୍ମୃତି ହେଉ କି ଦ୍ରାକେନିଆନ ବିଧି ବ୍ୟବସ୍ଥା ହେଉ, Service Code ର rules regulation ହେଉ କି କର୍ତ୍ତୃପକ୍ଷଙ୍କ ଅନୁଶାସନ ହେଉ—ହେଉ ବା ଛାତ୍ର-ଛାତ୍ରୀ କି ଅଧ୍ୟାପକମାନଙ୍କର ଆଚରଣବିଧି—କିଛି ଯାଏ ଆସେ ନାହିଁ । ନିୟମ ନିୟମ । ନ୍ୟାଯ୍ୟରୁ ପଥ ନ ପ୍ରବିଚଳନ୍ତି । ନିୟମ ନ ମାନିବା ଅପରାଧ । କିନ୍ତୁ ଜୀବନ ଯେ ଜୀବନ—ଏ କଥା ଡଃ ତ୍ରିପାଠୀ ବୁଝିବେ ନାହିଁ । ଏତେ ସୁଶୃଙ୍ଖଳ ହେବାକୁ ଚାହିଁଲେ କିଏ ତାଙ୍କ ସହିତ

ସହଯୋଗ କରିପାରିବ ? ଅନେକେ ତାଙ୍କୁ ଭୁଲ ବୁଝନ୍ତି । ତାହାଲେ ଅପଦସ୍ଥ କରନ୍ତି । ଯେଉଁଠି ନିୟମ ଲଙ୍ଘନ ଆମର ଜାତୀୟ ନିୟମ, ସେଠାରେ କ୍ଷମାହୀନ ଭାବରେ ଆଜୀବନ ନିୟମକୁ ଜାବୁଡ଼ି ଧରି ଲୋକଟି ଘରେ ବାହାରେ ଯେ କେତେ କଷ୍ଟ ପାଇଥିବେ ତାହା ଅନୁଭବୀମାନେ ହୃଦୟଙ୍ଗମ କରି ପାରିବେ । ଆମ ସମୟ ପାଇଁ ଯେପରି ସେ ପ୍ରସ୍ତୁତ ହୋଇପାରି ନାହାନ୍ତି । ସେଇଥିପାଇଁ ଆମେ ତାଙ୍କ ଭିତରେ ଭାରତୀୟ ଜାତିଗତ ପ୍ରକାଣ୍ଡ ଏକ ପ୍ରାଚୀନତ୍ୱ ଅନୁଭବ କରୁ । ସରଳ ବିଦ୍ୟାବୁଦ୍ଧି, ସାଧୁ ମନୋଭାବ ଏବଂ ସୁସ୍ଥ ଗୌରବୋଜ୍ଜ୍ୱଳ କାନ୍ତି ସାଙ୍ଗକୁ ବାର୍ଦ୍ଧକ୍ୟର ଧବଳ କେଶ ଓ ଶ୍ମଶ୍ରୁ ତାଙ୍କ ବ୍ୟକ୍ତିତ୍ୱକୁ ଏବେ ସ୍ପଷ୍ଟ ସେହି ଆର୍ଷ ମହିମା ପ୍ରଦାନ କରିଛି । ନିଜ ଭିତରେ ନିଜେ ଶାନ୍ତ ସମାହିତ ସେ । ଭୟ ଲାଗେ । ଭକ୍ତି ଆସେ । ଆମ ଶିକ୍ଷାନୁଷ୍ଠାନଗୁଡ଼ିକରେ ଯେବେ ଏପରି ଗୋଟିଏ ଗୋଟିଏ ଶୁଭ୍ର ବ୍ୟକ୍ତିତ୍ୱ ଉପସ୍ଥିତ ରହନ୍ତେ ତେବେ ପରିବେଶ ପବିତ୍ର ହୋଇ ଉଠନ୍ତା ।

ଡଃ ତ୍ରିପାଠୀ ଅଧ୍ୟୟନ, ଅଧ୍ୟାପନା ଓ ଶିକ୍ଷାନୁଷ୍ଠାନ ପରିଚାଳନାରେ ସମଗ୍ର ଜୀବନ ବିତାଇଛନ୍ତି । ଏବେ ବି ଅଛନ୍ତି ଏକ କଲେଜର ଅଧ୍ୟକ୍ଷ । ଦକ୍ଷତା ପ୍ରଶଂସାର୍ହ । ବିଶେଷତଃ ଶିକ୍ଷକ ଜୀବନଟି ତାଙ୍କର ସାଫଲ୍ୟ-ମଣ୍ଡିତ — ଅଗଣିତ କୃତବିଦ୍ୟ ଗୁଣମୁଗ୍ଧ ଛାତ୍ର ତାର ପ୍ରକୃଷ୍ଟ ପ୍ରମାଣ । ସେ ଭାଷଣ ଦିଅନ୍ତି ନାହିଁ; ପଢ଼ାନ୍ତି । ୫୦ ମିନିଟର ପିରିଅଡ଼ଟିରୁ ମିନିଟିଏ ବି ଅପବ୍ୟୟ କରନ୍ତି ନାହିଁ । ବଚନ ବିନ୍ୟାସରେ ରସଜ୍ଞତା କି ବିଶ୍ଳେଷଣଚାତୁର୍ଯ୍ୟ ନଥାଏ ଅବଶ୍ୟ, କିନ୍ତୁ ଥାଏ ପାଣ୍ଡିତ୍ୟ ଓ ବିଚାରନୈପୁଣ୍ୟ । ଉପସ୍ଥାପନା ମଧ୍ୟ ନିର୍ଭୁଲ ଓ ଅସ୍ପଷ୍ଟତାବର୍ଜିତ । ଓଡ଼ିଆ ଲିପି ଓ ଭାଷାତତ୍ତ୍ୱ ସମ୍ବନ୍ଧୀୟ ତାଙ୍କର ଅସାମାନ୍ୟ ଗବେଷଣା ଲଣ୍ଡନ ବିଶ୍ୱବିଦ୍ୟାଳୟର ସ୍ୱୀକୃତି ଲାଭ କରିଛି । ଅନଳଂକୃତ ବିନୀତ ଲୋକଟିକୁ ଦେଖିଲେ ଏ କ୍ଷେତ୍ରରେ ତାଙ୍କ ବିଦ୍ୟାବୁଦ୍ଧିର ବିଶାଳତା କଳ୍ପନା କରି ହେବ ନାହିଁ । ଆତ୍ମପ୍ରଚାର ଅନୁପସ୍ଥିତ, ଯଦିଓ ଆତ୍ମପ୍ରତ୍ୟୟ ବିପୁଳ । 'The Evolution of Oriya Language and Script'. ଗ୍ରନ୍ଥଟି ଭବିଷ୍ୟତରେ ବହୁବର୍ଷ ଧରି ଜ୍ଞାନାନ୍ୱେଷୀ ଛାତ୍ର ଓ ଶିକ୍ଷକଙ୍କର ଦିଗ୍‌ଦର୍ଶନ ହୋଇ ରହିବ । ଶିଳାଲେଖ

ଓ ତତ୍ତ୍ୱାପନ୍ଥୀ ପାଠ ଓ ସଂପାଦନାରେ ତାଙ୍କର କୃତିତ୍ୱ ଅଛି । ସାହିତ୍ୟ, ଭାଷାତତ୍ତ୍ୱ ଓ ଇତିହାସ ସମ୍ବନ୍ଧରେ ଅନେକ ସାରଗର୍ଭକ ପ୍ରବନ୍ଧ ଲେଖିଛନ୍ତି ସେ । କବିତା ମଧ୍ୟ ଲେଖିଛନ୍ତି କେତୋଟି । ଆବେଗ ପବିତ୍ର ଓ ସଫଳ, ଭାଷା ପଦ୍ୟାନୁଗୁଣ ଅନୁପ୍ରାଣିତ । ଉଦ୍ଭାବ ବର୍ତ୍ତମାନ, ଯଦିଓ ବିଶେଷ କବିତ୍ୱ ଅନୁପସ୍ଥିତ । ବରଂ କବିତ୍ୱର ଭାବ ନ ଥିବାରୁ ଡ଼ଃ ତ୍ରିପାଠୀଙ୍କ ସତ୍ୟଶୀଳତା ଭଲ ଲାଗେ । ସର୍ବୋପରି ଡ଼ଃ ତ୍ରିପାଠୀଙ୍କର ଯାହା ଆମକୁ ସବୁଠୁଁ ବେଶି ମୁଗ୍ଧ ଓ ଅଭିଭୂତ କରେ ତାହା ହେଉଛି ତାଙ୍କ ଅସାଧାରଣ ବ୍ୟକ୍ତିତ୍ୱର ଅନୁପମ ଚରିତ୍ର ମାଧୁର୍ଯ୍ୟ । ତାଙ୍କ କୀର୍ତ୍ତିଠାରୁ ସେ ଆହୁରି ମହତ୍ତର । ଜୀବନ ସୁଶୃଙ୍ଖଳ ଓ ନିଷ୍କଳୁଷ । କର୍ତ୍ତବ୍ୟନିଷ୍ଠା ଗୁଣପୂର୍ଣ୍ଣ । କେବଳ ଶିକ୍ଷାନୁଷ୍ଠାନର କର୍ତ୍ତବ୍ୟ ନୁହେଁ, ପାରିବାରିକ ଓ ସାମାଜିକ କର୍ତ୍ତବ୍ୟ ମଧ୍ୟ ସେ ସୁସମ୍ପନ୍ନ କରିଥାନ୍ତି । ଆଚରଣ ସଦାଚରଣ । ବ୍ୟବହାର ବିନୀତ ଓ ନିରଭିମାନ—ଅଧିକନ୍ତୁ ମଧୁର ବି । ମଣିଷଟି ପ୍ରାୟ ଦୋଷଶୂନ୍ୟ । ସମସ୍ତଙ୍କର ସୁହୃଦ୍ ସେ । ସମଦର୍ଶୀ ମଧ୍ୟ । ସେ ବୃଥା କଥା ପ୍ରାୟ କହନ୍ତି ନାହିଁ କି ପରଚର୍ଚ୍ଚା କରନ୍ତି ନାହିଁ । ବେଶ୍ ମିତଭାଷୀ । ସ୍ୱର ଅନୁଚ୍ଚ । ବକ୍ତବ୍ୟ ଅନୁଦ୍‌ବେଗକର । ବ୍ୟକ୍ତିତ୍ୱ ସ୍ନିଗ୍ଧ । ଧୈର୍ଯ୍ୟ ଅସୀମ । ଶିଷ୍ଟତା ଅନନୁକରଣୀୟ । ଅଦ୍ଭୁତ ଭାବରେ ପରମତ ସହିଷ୍ଣୁ ସେ, ଯଦିଓ ତାଙ୍କ ମତଦାର୍ଢ଼୍ୟ କିଛି କମ୍ ନୁହେଁ । ସେ କାହାକୁ କିନ୍ତୁ ଆଘାତ କରନ୍ତି ନାହିଁ । ଯଦି କେହି ତାଙ୍କ ଦ୍ୱାରା କିଛି ଅନ୍ୟାୟ କାର୍ଯ୍ୟ କରାଇ ନେବାକୁ ଚାହାନ୍ତି ତେବେ ସେ ଦୃଢ଼ ଓ ସାବଧାନ ହୋଇ ଉଠନ୍ତି; ବ୍ୟବହାର କିନ୍ତୁ ଶେଷ ପର୍ଯ୍ୟନ୍ତ ଥାଏ ପରମ ସୌଜନ୍ୟ-ମୂଳକ ଓ ପ୍ରୀତିସମ୍ବନ୍ଧ । ସେ ଆଡ଼େଇ ହୋଇଯାନ୍ତି ମାତ୍ର । ଛାତ୍ରମାନଙ୍କୁ ସ୍ନେହ କରନ୍ତି ଅତିଶୟ । ତାଙ୍କ ସ୍ନେହ ସବୁବେଳେ ଅକପଟ ଓ କୈତବରହିତ । ସେହି ସ୍ନେହ ସମ୍ପଦରେ ଆମେ ଧନ୍ୟ ହୋଇଛୁ । ଡ଼ଃ ତ୍ରିପାଠୀ କେବଳ ମେଧାବୀ ନୁହନ୍ତି ବଡ଼ ହୃଦୟବାନ୍ ମଧ୍ୟ । ଆମକୁ ପାଖରେ ପାଇଲେ ଆନନ୍ଦିତ ହୁଅନ୍ତି, କୃତିତ୍ୱ ଦେଖିଲେ ପ୍ରଶଂସା କରନ୍ତି, ଶୁଭାଶୁଭ ଖବର ରଖନ୍ତି । ଭାଷା ମୃଦୁ ମଧୁର । ବାକ୍ୟ ଛୋଟ ଛୋଟ; ବେଶ୍ ମିଠା ଓ ଆନ୍ତରିକ । ସେଇଥିପାଇଁ ତାଙ୍କ ସହିତ

କଥାବାର୍ତ୍ତା କଲେ ତୀର୍ଥସ୍ଥାନର ଶାନ୍ତି ଓ ସନ୍ତୋଷ ମିଳେ । ସାର୍, "ତୋମାର କୀର୍ତ୍ତିର ତେଜେ ତୁମି ଯେ ମହତ୍ ।"

ଲେଖକଙ୍କୁ ଡ଼ଃ ତ୍ରିପାଠୀ ଓଡ଼ିଆ ଭାଗବତ ସମ୍ବନ୍ଧରେ ଗବେଷଣା କରିବାକୁ ପ୍ରବର୍ତ୍ତାଇଥିଲେ । ଅନେକ ବର୍ଷ ତଳର କଥା । ଗବେଷଣା ଚାଲିଛି ଅବଶ୍ୟ, ଯଦିଓ ତାହା ଭ୍ରୂଣାବସ୍ଥାରୁ ଉତ୍ତୀର୍ଣ୍ଣ ହୋଇପାରୁ ନାହିଁ ଏପର୍ଯ୍ୟନ୍ତ । ଲେଖକ ସେହି ଭାଗବତର ଭାଷାରେ ସାର୍‌ଙ୍କ ଭାବମୂର୍ତ୍ତି ଦେଖିପାରେ । ଆଶ୍ଚର୍ଯ୍ୟ ଚରିତ ବିଗ୍ରହବନ୍ତ ପୁଣ୍ୟ ପୁରୁଷ ସେ— ଭଗବାନ ଏମିତି ଆଶ୍ଚର୍ଯ୍ୟଚରିତରୂପ କଳେବର ଧାରଣ କରି ଦେହୀମାନଙ୍କ ଅନ୍ତର ଓ ବାହାରେ ସମସ୍ତ ଅଶୁଭ ନାଶ କରିଥାନ୍ତି । ଡ଼ଃ ତ୍ରିପାଠୀ ସେହି ଆଶ୍ଚର୍ଯ୍ୟଚରିତରୂପ ସଜ୍ଜନ । ସେ ଆମର ଭକ୍ତିମୂଳ ପ୍ରଣାମ ଗ୍ରହଣ କରନ୍ତୁ, ଦୀର୍ଘ ନିରାମୟ ଜୀବନ ଲାଭ କରନ୍ତୁ ଓ ଘରପାଖର ଅଶୁଭ ବିନାଶୁଥାନ୍ତୁ ।



# ଡଃ କୁଞ୍ଜବିହାରୀ ତ୍ରିପାଠୀ : ଜୀବନାୟନ

**ବାଉରୀବନ୍ଧୁ କର**

—ଏକ—

ଚଳିତ ଶତକର ଅନ୍ୟତମ ବରିଷ୍ଠ ଭାଷାବିତ୍, ଗବେଷକ ଓ କୃତବିଦ୍ୟ ଶିକ୍ଷକ ଭାବରେ ପ୍ରଫେସର କୁଞ୍ଜବିହାରୀ ତ୍ରିପାଠୀଙ୍କ ଖ୍ୟାତି ସୁବିଦିତ । ତାଙ୍କର ନିଷ୍ଠାପର ଅଧ୍ୟାପନା, ଉଚ୍ଚକୋଟୀର ଗବେଷଣା, ଗଭୀର ପାଣ୍ଡିତ୍ୟ, କଠୋର ଅଧ୍ୟବସାୟ, ସଂସ୍କୃତିପ୍ରୀତି ମଣ୍ଡିତନିଷ୍ଠ ଆଦର୍ଶ ଜୀବନ ଏ ଯୁଗରେ ବିରଳ । ସଂସାର ପ୍ରତି ଅନାସକ୍ତ, ସଦାଉଦାର, ନିରହଙ୍କାର, ହୃଦୟବାନ ଓ ମାନବିକ ମୂଲ୍ୟବୋଧରେ ଗଭୀର ଆସ୍ଥା ପୋଷଣ କରୁଥିବା ଏଇ ଶାନ୍ତ ସରଳ ବ୍ୟକ୍ତିଟିକୁ ଦେଖିଲେ ସ୍ୱତଃ ମୁଣ୍ଡ ନଇଁଯାଏ । ତାଙ୍କପରି ବିଦ୍ୱାନ୍ ଆଦର୍ଶ ଶିକ୍ଷକ ଆମ ଶିକ୍ଷକ ସମାଜର ଗର୍ବ ଓ ଗୌରବ । ଏଭଳି ଶିକ୍ଷକଙ୍କ ଜୀବନୀ ଏ ଜାତିର ମହାର୍ଘ ସମ୍ପଦ ଓ ଭାବୀ ବଂଶଧରମାନଙ୍କ ପାଇଁ ପ୍ରେରଣାର ଉତ୍ସ ।

ପ୍ରଫେସର ତ୍ରିପାଠୀଙ୍କର କଟକ ଜିଲ୍ଲାର ବାଙ୍କୀ ସବ୍‌ଡିଭିଜନର ଚଥୁରପଡ଼ା ଗ୍ରାମରେ ୧୯୧୦ ମସିହା ସନ ୧୩୧୭ ସାଲ ମିଥୁନ ୧୩ ଦିନ ଆଷାଢ଼ ଶୁକ୍ଳ ଚତୁର୍ଥୀ ତିଥିରେ ଜନ୍ମ । ସେତେବେଳେ ବାଙ୍କୀକୁ ଏଭଳି ପକ୍କା ରାସ୍ତା ନଥିଲା କିମ୍ବା ଗମନାଗମନର ବିଶେଷ ସୁବିଧା ନଥିଲା । କେବଳ ମହାନଦୀର ଦକ୍ଷିଣ ପାର୍ଶ୍ୱରେ ମୁଣ୍ଡମୁହାଣଠାରୁ ସୋନପୁର ପର୍ଯ୍ୟନ୍ତ ଗୋଟିଏ ପୁରୁଣା ସଡ଼କ ଥିଲା । ଏହି ସଡ଼କରେ ବୁଲାବୁଲି ଲୋକମାନେ ମହାନଦୀର ନୈସର୍ଗିକ ଶୋଭା ଅବଲୋକନ କରି ବାଙ୍କୀ ଯାଉଥିଲେ । ସେହି ସଡ଼କଠାରୁ ପ୍ରାୟ ତିନି-ଚାରି କିଲୋମିଟର ଉତ୍ତରକୁ ମହାନଦୀ ମଝିରେ ସିଂହନାଥ ମନ୍ଦିର ଅବସ୍ଥିତ । ଯାହାର ପ୍ରାକୃତିକ ଶୋଭା-ରାଜିରେ ଭାବବିହ୍ୱଳ ହୋଇ କବିବର ରାଧାନାଥ ରାୟ ଲେଖିଥିଲେ :

"ସ୍ରୋତେ ଶୈଳଶୃଙ୍ଗେ ଶଶାଙ୍କଶେଖର
ସିଂହନାଥ ପୁଣି ଧବଳ ଈଶ୍ୱର
ଗମନ୍ତି ଯେକାଳେ ସିଂହ ଚତୁଷ୍ପାର୍ଶ୍ୱେ
ଜ୍ୟୋତିର୍ମୟ ବର୍ଣ୍ଣେ କୁମାରୀ ବସନ୍ତ,
ଗେରିକ-ଅରୁଣ ସ୍ରୋତ ଜଳେ ଘସି
ଯାଆନ୍ତି ସୁନ୍ଦରୀ ଭେଟିବାକୁ ପାଶି ।" ଇତ୍ୟାଦି

ଏହିକି ପ୍ରସିଦ୍ଧ ପୀଠ ସିଂହନାଥ ମନ୍ଦିରଠାରୁ ପ୍ରାୟ ଛଅ-ସାତ କିଲୋମିଟରରେ ଉତ୍ତର-ପୂର୍ବରେ ପଥୁରିପଡ଼ା ଗ୍ରାମ ବିଦ୍ୟମାନ । ଏହି ଗ୍ରାମରେ କେତେ-ଚୁଡ଼ିଏ ବ୍ରାହ୍ମଣ ପରିବାର ବହୁକାଳରୁ ବାସ କରି ଆସୁଛନ୍ତି । ଏହି ବ୍ରାହ୍ମଣମାନଙ୍କର ସଂଜ୍ଞା 'ତିଆଡ଼ି' । ଲୋକମୁଖରେ ଏହି 'ତିଆଡ଼ି' ବ୍ରାହ୍ମଣମାନେ ସମସ୍ତେ ତ୍ରିପାଠୀ ଭାବରେ ଲେଖା ପଡ଼ାରେ ପରିଚିତ । କୁଞ୍ଜବିହାରୀଙ୍କ ପିତା ହେଲେ ମହାଦେବ ତ୍ରିପାଠୀ ଓ ତାଙ୍କ ମାତାଙ୍କ ନାମ ସୀତାଦେବୀ । ମହାଦେବ ଥିଲେ ଦୀର୍ଘକାୟ ପୁରୁଷ । ସେଥିପାଇଁ ତାଙ୍କୁ ଜନସାଧାରଣ ଡାକୁଥିଲେ 'ଢେଙ୍ଗା ମହାଦେବ' । ଏହି ଢେଙ୍ଗା ମହାଦେବଙ୍କର ବିଶେଷ କିଛି ଆନୁଷ୍ଠାନିକ ଶିକ୍ଷା ନଥିଲେ ସୁଦ୍ଧା ସେ ସଂସ୍କୃତ ଗ୍ରନ୍ଥ, ତାଳପତ୍ର ପୋଥି ଭଲଭାବେ ପଢ଼ି ପାରୁଥିଲେ । ତାଙ୍କର ହସ୍ତାକ୍ଷର ମଧ୍ୟ ଆକର୍ଷଣୀୟ ଥିଲା । ତାଙ୍କ ଘରେ ବିଭିନ୍ନ ଭାଷାରେ ଲିଖିତ ପୋଥିମାନ ଥିଲା । 'ବୈଦେହୀଶ ବିଳାସ', 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର', 'ରାମ ଚରିତ ମାନସ', ବଙ୍ଗଳା ଭାଷାରେ ମୁଦ୍ରିତ 'ହଂସଦୂତ' ଭଳି ଗ୍ରନ୍ଥ ତାଙ୍କର ଅତି ଅପଣାର ଥିଲା । ଏଥିରୁ ତାଙ୍କର ସାହିତ୍ୟାନୁରାଗ ସହଜରେ ଅନୁମାନ କରାଯାଇପାରେ ।

କୁଞ୍ଜବିହାରୀଙ୍କ ପିତା ମହାଦେବ ଗମ୍ଭୀର ସ୍ୱଭାବର ମଣିଷଟିଏ ହେଲେ ମଧ୍ୟ ସେ ଥିଲେ କଳାପ୍ରିୟ । ଲଳିତ ସ୍ୱରରେ ଗୀତ ଗାଇବା ଓ ମୃଦଙ୍ଗ ବାଦନ କରିବାରେ ସେ ଧୂରୀଣ ଥିଲେ । ବିଶେଷ କରି ରାସପର୍ବରେ ସେ ମଦନମୋହନଙ୍କ ନିକଟରେ ମୃଦଙ୍ଗ ବାଦନ କରି ଉପସ୍ଥିତ ଦର୍ଶକ-ମାନଙ୍କୁ ଚମତ୍କୃତ କରିପାରୁଥିଲେ । ସେ ଖୁବ୍ ଅଳ୍ପକଥା କହୁଥିଲେ ଓ

ତାଙ୍କର ଧୀରସ୍ଥିର ସ୍ୱଭାବରେ କଥାବାର୍ତ୍ତା କହିବାର ଅଭ୍ୟାସ ଥିଲା । ସେ ତାଙ୍କର ପିଲାମାନଙ୍କ ଉପରେ ବିରକ୍ତ ହେଉ ନଥିଲେ । ଅଶିଷ୍ଟ ଭାଷାରେ କଥାବାର୍ତ୍ତା ସେ କେବେହେଲେ କାହାରିକୁ କରୁନଥିଲେ । ତାଙ୍କର ମାତା ମଧ୍ୟ ଅତ୍ୟନ୍ତ ସ୍ନେହଶୀଳା ଥିଲେ । କେବେହେଲେ ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ କଳହ ଲାଗୁନଥିଲା । ବହୁଦିନ ପର୍ଯ୍ୟନ୍ତ ସୀତାଦେବୀଙ୍କର ପିଲାପିଲି ହୋଇ ନଥିଲେ । ସେଥିପାଇଁ ସେ ନାନାବ୍ରତ ଓ ଉପବାସ କରୁଥିଲେ । ଶେଳମଶରେ ହେଲେ ସୁଦ୍ଧା ସେ ତିନୋଟି ପୁଅ ଓ ଦୁଇଟି ଝିଅର ଜନନୀ ହୋଇଥିଲେ । କୃଷ୍ଣଚନ୍ଦ୍ରଙ୍କ ଥିଲେ ମଝିଆଁ ପୁଅ । ବାଲ୍ୟକାଳରୁ ପରିବାରର ଶାନ୍ତ ଶିଷ୍ଟ ଜୀବନଯାପନ ପ୍ରଣାଳୀ ତାଙ୍କ ଉପରେ ବେଶ୍ ପ୍ରଭାବ ପକାଇଥିଲା ।

## —ଦୁଇ—

ସେ ସମୟର ପ୍ରଚଳିତ ପ୍ରଥା ଅନୁଯାୟୀ କୃଷ୍ଣଚନ୍ଦ୍ରଙ୍କ ବାଲ୍ୟଶିକ୍ଷା ଲାଭ କରିଥିଲେ । ନିକଟସ୍ଥ ବରପୁଟ ଗ୍ରାମର ପ୍ରାଇମେରି ବିଦ୍ୟାଳୟରୁ ସେ ତୃତୀୟ ଶ୍ରେଣୀ ପାସ୍ କରି ବାଙ୍କୀକୁ ଉଚ୍ଚଶିକ୍ଷା ସକାଶେ ଆସି ବାଙ୍କୀ ମାଇନର ସ୍କୁଲରେ ନାମ ଲେଖାଇଲେ । ସେ ୧୯୨୮ ମସିହାରେ ବାଙ୍କୀ ରମପଡ଼ା ହାଇସ୍କୁଲରୁ ପ୍ରଥମ ଶ୍ରେଣୀରେ ମାଟ୍ରିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ସେତେବେଳେ ହାଇସ୍କୁଲମାନଙ୍କରେ ଛାତ୍ରମାନଙ୍କୁ କଠୋର ଶୃଙ୍ଖଳା ଭିତରେ ଅଧ୍ୟୟନ କରିବାକୁ ପଡ଼ୁଥିଲା । ସେ ହାଇସ୍କୁଲରେ ପଢ଼ୁଥିବା ସମୟରେ ଆମିଷ ଭକ୍ଷଣ ପରିତ୍ୟାଗ କରିଥିଲେ । ଏହି ଅଭ୍ୟାସ ତାଙ୍କର ଅଦ୍ୟାବଧି ରହିଛି ।

୧୯୨୮ ମସିହାରେ ସେ ରେଭେନ୍ସା କଲେଜରେ ଆଇ. ଏ. ଶ୍ରେଣୀରେ ନାମ ଲେଖାଇଲେ । ସେତେବେଳେ ବସ୍ ଯାତାୟାତର ସୁବିଧା ବାଙ୍କୀରୁ କଟକକୁ ନଥିଲା । ତେଣୁ ଛାତ୍ରମାନେ କଟକରୁ ବାଙ୍କୀ ଯିବାବେଳେ ପାଦରେ ଚାଲି ଚାଲି ଯାଉଥିଲେ । ସେ ରେଭେନ୍ସା କଲେଜରେ ଅଧ୍ୟୟନ କାଳରେ ଥିଲେ ପୂର୍ବ ଛାତ୍ରାବାସର ଅନ୍ତେବାସୀ ।

ସେତେବେଳେ ପୂର୍ବ ଛାତ୍ରାବାସର Warden ଶ୍ୟାମଚରଣ ତ୍ରିପାଠୀ ସାହେବ ଓ Superintendent ଥିଲେ ରାୟ ବାହାଦୂର ଆର୍ତ୍ତବଲ୍ଲଭ ମହାନ୍ତି । ପଶ୍ଚିମ ଛାତ୍ରାବାସର Warden ପ୍ରାଣକୃଷ୍ଣ ପରିଜା ସାହେବ ଓ Superintendent ଥିଲେ ରାୟସାହେବ ନାରାୟଣ ମିଶ୍ର । ସେ ସମୟରେ ଛାତ୍ରାବାସର ବାତାବରଣ ଅତ୍ୟନ୍ତ ଉନ୍ନତ ଥିଲା । ମେସ୍ ଖର୍ଚ୍ଚ ଥିଲା ମାସିକ ଦଶଟଙ୍କା । ଏହି ଦଶଟଂକାରେ ଦୁଇଓଳ ଭାତ, ଡ଼ାଲି, ତରକାରି, ସନ୍ତୁଳା, ଭଜା, ଖଟା ପ୍ରଭୃତି ଖାଇବାକୁ ଅନ୍ତେବାସୀମାନଙ୍କୁ ଦିଆଯାଉଥିଲା । ଏହାଛଡ଼ା ସପ୍ତାହରେ ଥରେ ମାଛ ଓ ମାଂସ ଭୋଜନର ବ୍ୟବସ୍ଥା ଥିଲା । ନିରାମିଷାଷୀମାନଙ୍କ ପାଇଁ ବିକଳ୍ପ ରୂପେ ରସଗୋଲା ଦିଆଯାଉଥିଲା । ତା' ଛଡ଼ା ପ୍ରତ୍ୟେକ ଛାତ୍ରାବାସରେ ଗୋଟିଏ ଗୋଟିଏ ଭଲ ମିଷ୍ଟାନ୍ନ ଭଣ୍ଡାର ଥିଲା । ସେ ସମୟରେ ଦଶଟଙ୍କାରେ ଛାତ୍ରମାନେ ଯାହା ଖାଇବାକୁ ପାଉଥିଲେ, ତାହାକୁ ଏବେ ଆମେ ସମ୍ଭ୍ରାନ୍ତଲୋକଙ୍କ ଖାଦ୍ୟଠାରୁ ଉତ୍କୃଷ୍ଟ ବୋଲି କହିପାରିବା । ଅଧ୍ୟାପକମାନେ ଛାତ୍ରାବାସରେ ଅନ୍ତେବାସୀମାନଙ୍କ ପଢ଼ାପଢ଼ି ପ୍ରତି କଡ଼ା ନଜର ରଖୁଥିଲେ ।

ଆଇ. ଏ. ଶ୍ରେଣୀରେ ପଢ଼ିବା ସମୟରେ କୁଞ୍ଜବିହାରୀଙ୍କର ପାନଖିଆ ଅଭ୍ୟାସ ଥିଲା । ସେ ବନ୍ଧୁମାନଙ୍କ ଗହଣରେ ବୁଲିବାକୁ ମଧ୍ୟ ଖୁବ ଭଲ ପାଉଥିଲେ । ସେତେବେଳେ ପଇସାକୁ ଗୁରିଖଣ୍ଡ ପାନ ମିଳୁଥିଲା । ପୂର୍ବ ଛାତ୍ରାବାସରେ ଯେତେ ଅନ୍ତେବାସୀ ଥିଲେ, ତାଙ୍କର ସ୍ୱାସ୍ଥ୍ୟ ସେମାନଙ୍କ ମଧ୍ୟରୁ ଉତ୍ତମ ଥିଲା । ବି. ଏ. ଶ୍ରେଣୀରେ ଅଧ୍ୟୟନ ବେଳକୁ ସେ ପାନଖିଆ ପରିହାର କରିଥିଲେ ଓ ନିଃସଙ୍ଗ ହୋଇ ଭ୍ରମଣ କରିବାକୁ ଯାଉଥିଲେ । ପୂର୍ବ ଛାତ୍ରାବାସରେ ରହଣି କାଳରେ ସେ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପରି ବରିଷ୍ଠ ଶିକ୍ଷକ ଓ ଗବେଷକଙ୍କ ସମ୍ପର୍କରେ ଆସିବାର ସୁଯୋଗ ପାଇଥିଲେ । ରେଭେନ୍ସା କଲେଜରୁ ୧୯୩୨ ମସିହାରେ ସେ ପ୍ରଥମ ଶ୍ରେଣୀରେ କୃତିତ୍ୱର ସହ ବି.ଏ. ପାସ୍ କରିଥିଲେ । ସେତେବେଳେ ସଂସ୍କୃତରେ ଏମ୍. ଏ. ପଢ଼ିବାର ସୁଯୋଗ ଓଡ଼ିଶାରେ ନଥାଏ । ସ୍ନାତକୋତ୍ତର ଶିକ୍ଷା ପାଇଁ ବିହାରର ପାଟନାକୁ ଛାତ୍ରମାନଙ୍କୁ ଯିବାକୁ ପଡ଼ୁଥିଲା । ସେଠାରେ ସେ ଏମ୍. ଏ. ସଂସ୍କୃତରେ ଅଧ୍ୟୟନ କରି

୧୯୩୪ ମସିହାରେ କୃତିତ୍ୱର ସହ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହୋଇଥିଲେ । ସେତେବେଳେ ଖୁବ୍ କମ୍ ସଂଖ୍ୟାରେ ଅଧ୍ୟାପକ ଚାକିରି ଥିଲା । ସେ ଏମ୍. ଏ. ପରେ ବି. ଏଲ୍ ପଢ଼ିଥିଲେ । ୧୯୩୭ ମସିହାରେ ବି. ଏଲ୍. ପାସ୍ କରି ଅଳ୍ପ କେତେଦିନ ଓକିଲାତି ମଧ୍ୟ କରିଥିଲେ । ତା'ପରେ ସେ ୧୯୩୮ ମସିହାରେ ରେଭେନ୍ସା କଲେଜରେ ସଂସ୍କୃତ-ଓଡ଼ିଆ ବିଭାଗର ଅଧ୍ୟାପକ ଭାବରେ ଯୋଗଦାନ କଲେ । ସେ ସମୟରେ ରେଭେନ୍ସା କଲେଜରେ ଯୋଗ୍ୟ ବିଦ୍ୱାନ୍ ଅଧ୍ୟାପକମାନେ ଥିଲେ । ସେମାନଙ୍କ ମଧ୍ୟରେ ଇତିହାସ ବିଭାଗର ରାୟସାହେବ ନିର୍ମଳଚନ୍ଦ୍ର ବାନାର୍ଜି, ନଳିନୀକାନ୍ତ ସାନ୍ୟାଲ, ଘନଶ୍ୟାମ ଦାଶ; ଦର୍ଶନ ବିଭାଗର ମୋହିନୀ ମୋହନ ସେନାପତି, ରତ୍ନାକର ପତି; ବିପିନ ବିହାରୀ ରାୟ; ଇଂରାଜୀ ବିଭାଗର ଗିରିଜାଶଙ୍କର ରାୟ, ନାରାୟଣ ମୋହନ ଦେ, ଚନ୍ଦ୍ରମଣି ଦାସ; ସଂସ୍କୃତ-ଓଡ଼ିଆ ବିଭାଗର କାଶୀନାଥ ଦାସ, ଆର୍ତ୍ତବଲ୍ଲଭ ମହାନ୍ତି ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ । ସେତେବେଳକୁ ଆର୍ତ୍ତବଲ୍ଲଭଙ୍କ ନେତୃତ୍ୱରେ ପ୍ରାଚୀ ସମିତି ପ୍ରାଚୀନ ପୋଥିରୁ ଗ୍ରନ୍ଥ ସଂପାଦନା, ମଧ୍ୟଯୁଗୀୟ ସାହିତ୍ୟ ଆଲୋଚନା, 'ପ୍ରାଚୀ' ନାମକ ଇଂରାଜୀ ପତ୍ରିକାର ପ୍ରକାଶନ ପ୍ରଭୃତି କାର୍ଯ୍ୟ ଜୋରସୋର ଚାଲିଥିଲା । ଭାଷା-ସାହିତ୍ୟ ଗବେଷଣା ପାଇଁ ସେକାଳରେ ରେଭେନ୍ସା କଲେଜ ଥିଲା ପ୍ରଶସ୍ତ କ୍ଷେତ୍ର । ଏଭଳି ଏକ ପରିବେଶରେ ତରୁଣ କୁଞ୍ଜବିହାରୀ ଅଧ୍ୟାପକ ଭାବରେ ରହି ଭାଷା-ସାହିତ୍ୟ ଗବେଷଣାରେ ମନୋନିବେଶ କରିଥିଲେ । ସେଠାରେ କାର୍ଯ୍ୟ କରିବାର ଅଳ୍ପ କେତେବର୍ଷ ଭିତରେ ସେ ୧୯୪୫ରେ ସହକାରୀ ପ୍ରଫେସର ପଦବୀକୁ ଉନ୍ନୀତ ହୋଇଥିଲେ । ସେ ୧୯୪୯ ମସିହା ସେପ୍ଟେମ୍ବର ମାସରୁ ୧୯୫୩ ମସିହା ପର୍ଯ୍ୟନ୍ତ ଛୁଟି ନେଇ ଗବେଷଣା ଉଦ୍ଦେଶ୍ୟରେ ଲଣ୍ଡନ ବିଶ୍ୱ-ବିଦ୍ୟାଳୟ ଯାଇଥିଲେ । ସେଠାରେ ସେ ଓଡ଼ିଆ ଶିଳାଲେଖରୁ ଓଡ଼ିଆ ଭାଷା ଓ ଲିପିର ଉତ୍ପତ୍ତି ସଂପର୍କରେ ଗବେଷଣା କରି ୧୯୫୩ ମସିହାରେ ପିଏଚ୍. ଡି. ପାଇବାକୁ ଯୋଗ୍ୟ ବିବେଚିତ ହୋଇଥିଲେ । ଇଂରାଜୀରେ ଲିଖିତ ଏହି ସନ୍ଦର୍ଭଟି ପରବର୍ତ୍ତୀକାଳରେ ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା 'The Evolution of Oriya Language and Script' ନାମରେ ପ୍ରକାଶିତ ହୋଇଥିଲା ।

୧୯୫୪ ମସିହାରେ ଡ଼ଃ ତ୍ରିପାଠୀ ରାଜେନ୍ଦ୍ର କଲେଜ, ବଲାଙ୍ଗୀରର ଅଧ୍ୟକ୍ଷ ଭାବରେ ଯୋଗ ଦେଇଥିଲେ । ଜଣେ ଅଧ୍ୟକ୍ଷ ଭାବରେ ସେ ଅଧ୍ୟାପନା, ଶୃଙ୍ଖଳା ଓ ସମୟାନୁବର୍ତ୍ତିତା ଉପରେ ଗୁରୁତ୍ୱ ଦେଉଥିଲେ । ନିୟମ ଅନୁଯାୟୀ କଡ଼ାକଡ଼ି ଭାବରେ ପରୀକ୍ଷା ପରିଚାଳନାରେ ସେ ଥିଲେ ସୁଦକ୍ଷ । ସେଠାରେ ଗୋଟିଏ ବର୍ଷ ଅତିବାହିତ କରିବା ପରେ ପୁଣି ସେ ୨୪-୨-୧୯୫୫ ତାରିଖରେ ରେଭେନ୍‌ସା କଲେଜର ଓଡ଼ିଆ ଓ ସଂସ୍କୃତ ବିଭାଗର ପ୍ରଫେସର ଓ ମୁଖ୍ୟ ଭାବରେ ହେଲେ ଅବସ୍ଥାପିତ । ଏହି ପଦରେ ସେ ୧୯୬୭ ମସିହା ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । ସେଠାରୁ ବଦଳି ହୋଇ ସେ ହେଲେ ଗଙ୍ଗାଧର ମେହେର କଲେଜ, ସମ୍ବଲପୁରର ଅଧ୍ୟକ୍ଷ । ସେଠାରେ ଦକ୍ଷତାର ସହ କାର୍ଯ୍ୟନିର୍ବାହ କରି ୧୯୬୮ ମସିହା ଅଗଷ୍ଟ ପହିଲା ଦିନ ସରକାରୀ ଚାକିରୀରୁ ଅବସର ଗ୍ରହଣ କଲେ ।

— ତିନି —

ସରକାରୀ ଚାକିରିରୁ ଅବସର ଗ୍ରହଣ ପରେ ଡ଼ଃ ତ୍ରିପାଠୀ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗର ପ୍ରଫେସର ଓ ମୁଖ୍ୟ ଭାବରେ ସେହି ୧୯୬୮ ମସିହାରେ ଯୋଗଦାନ କରିଥିଲେ । ଏହିଠାରେ ସେ ୧୯୭୨ ମସିହା ପର୍ଯ୍ୟନ୍ତ ସୁରୁଚି ରୂପେ କାର୍ଯ୍ୟ ତୁଲାଇ-ଥିଲେ । ତାଙ୍କର ଉଦ୍ୟମରେ ବିଭାଗର ହୋଇଥିଲା ବହୁବିଧ ଉନ୍ନତି । ସେ ବିଭାଗ ପାଇଁ କେତେକ ଦୁର୍ଲ୍ଲଭ ପତ୍ରିକା ଓ ପୋଥି ସଂଗ୍ରହ କରିଥିଲେ । ସେ ୧୯୭୦-୭୨ ଏହି ଦୁଇବର୍ଷ ମଧ୍ୟ ବ୍ରହ୍ମପୁର ବିଶ୍ୱ-ବିଦ୍ୟାଳୟ ସ୍ନାତକୋତ୍ତର ବିଭାଗ ସମୂହର ମୁଖ୍ୟ ଥିଲେ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ଅବସର ନେଇ ସେ କିଛିକାଳ ସମ୍ବଲପୁର ବିଶ୍ୱ-ବିଦ୍ୟାଳୟରେ ମଧ୍ୟ ପରିଦର୍ଶୀ ଅଧ୍ୟାପକ (Visiting Professor) ଭାବରେ ଅଧ୍ୟାପନା କରିଥିଲେ । ସେ ନିୟମ ଅନୁଯାୟୀ ସରକାରୀ ଚାକିରୀ ଓ ବିଶ୍ୱବିଦ୍ୟାଳୟ ଚାକିରୀରୁ ଅବସର ନେଇଥିଲେ ସୁଦ୍ଧା ଏବେ ବି ବିଭିନ୍ନ କ୍ଷେତ୍ରରେ ଅଧ୍ୟୟନ ଓ ଅଧ୍ୟାପନା ସହ ସଂପୃକ୍ତ ରହିଛନ୍ତି । ସେ ୧୯୮୧ ମସିହାରୁ ଅଦ୍ୟାବଧି କଟକ ଖୋରଧା ସାହି ମହିଳା ମହା-

ବିଦ୍ୟାଳୟର ଅଧ୍ୟକ୍ଷ ଭାବେ କାର୍ଯ୍ୟ କରୁଛନ୍ତି । ସେ ୧୯୩୮ ମସିହାରେ ଯେଉଁ ଅଧ୍ୟାପନା ବୃତ୍ତିରେ ଯୋଗ ଦେଇଥିଲେ, ସେଥିରେ ଏବେ ସୁଦ୍ଧା ସେ ରହିଛନ୍ତି । ମନେହୁଏ ସତେ ଯେମିତି ତାଙ୍କ ଜୀବନ ଅଧ୍ୟୟନ ଓ ଅଧ୍ୟାପନା ସହିତ ଏକାକାର ହୋଇଯାଇଛି ।

ସେ ଅଧ୍ୟୟନ ଓ "ଅଧ୍ୟା[illegible] ଗବେଷକ ରଚୟିତା ଭାବେ ସୁପରିଚିତ । ତାଙ୍କର [illegible] 'The Evolution of Oriya Language and Script', 'A Brief History of Oriya Literature' ପାଲି 'ଧମ୍ମପଦ'ର ଓଡ଼ିଆ ଅନୁବାଦ, 'ଓଡ଼ିଆ ଭାଷା ଓ ଲିପିର କ୍ରମବିକାଶ', 'ପ୍ରାଚୀନ ଓଡ଼ିଆ ଅଭିଲେଖ', 'ଆଞ୍ଚଳିକ ଓଡ଼ିଆ ଶବ୍ଦକୋଷ', କୁମାର ସମ୍ଭବ-୫ମ ସର୍ଗ (ସମ୍ପାଦନା ଓ ଆଲୋଚନା), 'ଓଡ଼ିଆ ସାହିତ୍ୟ ସମୀକ୍ଷା' (ସଂପାଦନା), 'ଅଳଂକାର ପରିଚୟ', 'ଭାଗବତ-ସୂକ୍ତି-ମୁକ୍ତାବଳୀ', 'ପୁଷ୍ପାଞ୍ଜଳି', 'ବନ୍ଦନିକା' ପ୍ରଭୃତି ପ୍ରଧାନ । ତାଙ୍କର ବହୁଭିନ୍ନ ପତ୍ରପତ୍ରିକାର ପୃଷ୍ଠାରେ ବିକ୍ଷିପ୍ତ ଭାବରେ ଇଂରାଜୀ ଓ ଓଡ଼ିଆରେ ଶତାଧିକ ଲେଖା ରହିଛି । ସାହିତ୍ୟ ଆଲୋଚନା ଓ ଗବେଷଣାରେ ଡଃ ତ୍ରିପାଠୀଙ୍କ ନିଷ୍ଠା ସକାଶେ ପୁରୀର ଗଜପତି ମହାରାଜା ତାଙ୍କୁ 'ସାହିତ୍ୟ ବିଶାରଦ' ଉପାଧି ଦେଇଥିଲେ । ସେହି ସନନ୍ଦଟିର ସ୍ୱରୂପ ଏହିପରି ।

**ଗଜପତି ମହାରାଜା**

ପୁରୀ

ଶ୍ରୀଶ୍ରୀଶ୍ରୀ ଗଜପତି ମହାରାଜା ବୀରକିଶୋର ଦେବଙ୍କ ୩ ଅଙ୍କ ସ୍ୱ ୧୩୬୫ ସାଲ ସିଂହମାସ ୨୧ ଦିନ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ବଡ଼ଦେଉଳ ପରିଚ୍ଛାଙ୍କୁ, ସମସ୍ତ କାର୍ଯ୍ୟମାନଙ୍କୁ, ସହର ସର୍ଦ୍ଦାରଙ୍କୁ, ସାତସାହି ନାୟକଙ୍କୁ, ଖୁଆର ମହାସୁଆରମାନଙ୍କୁ, ଛାମୁ ଭୋଗ ବିଶୋଇଙ୍କୁ, ଦ୍ୱାରବାଟ କରଣଙ୍କୁ ଟହାଉ ।

ଡ଼କ୍ଟର କୁଞ୍ଜବିହାରୀ ତ୍ରିପାଠୀ, ଅଧ୍ୟାପକ ରେଭେନ୍‌ସା କଲେଜ, କଟକ—ନାନାବିଧ ସାହିତ୍ୟ ଓ ଐତିହାସିକ ତଥ୍ୟ ପ୍ରକାଶ କରିବାରେ

ପାରଦଶ ତା ଲଭ କରିଥିବାରୁ ତାହାଙ୍କୁ 'ସାହିତ୍ୟ ବିଶାରଦ' ଉପାଧିରେ ଭୂଷିତ କଲୁ । ଏ ସିରସ୍ତା କାଗଜାତମାନଙ୍କରେ ଓ ଅନ୍ୟାନ୍ୟ ସ୍ଥାନମାନଙ୍କରେ ଉକ୍ତ ଉପାଧି ଦରଜ କରାଇ ବ୍ୟବହାର କରିବେ । ଏହାକୁ କେହି ଅଟକ ବା ଖଣ୍ଡନ ନ କରିବେ । ଇତି ।

ତା ୫-୯-୫୭

ସ୍ବା—ଶ୍ରୀ ବୀରକିଶୋର ଦେବ

ଶ୍ରୀ ଶ୍ରୀ ଶ୍ରୀ ଗଜପତି ମହାରାଜା, ପୁରୀ

—ଚୂର—

[illegible]

ସୁସ୍ଥ ଓ ବ୍ୟବସ୍ଥିତ । ଏସବୁ ପୂର୍ଣ୍ଣତା ଭିତରେ ଡ଼ଃ ତ୍ରିପାଠୀଙ୍କ ଜୀବନରେ ଏକ ଦୁଃଖଦ ଶୂନ୍ୟତା ଅଛି । ସ୍କୁଲରେ ପଢ଼ିଲାବେଳେ ତାଙ୍କର ବିବାହ ହୋଇଯାଇଥିଲା । ପ୍ରଚଳିତ ଥିଲା ସେଦିନ ବାଲ୍ୟବିବାହ । ଝିଅଟିଙ୍କ ଶୁଭନାମ ଏବେ ଆଉ କାହାର ମନେ ନାହିଁ । ଡ଼ାକ ନାମ ଥିଲା ଖିରିଆ (ଏକ ପ୍ରକାର ମୃଗଙ୍କୁ ଖିରିଆ କୁହାଯାଏ) । ପିଲାବେଳେ ସେ ମୃଗପରି ଚଞ୍ଚଳ ଥାଇପାରନ୍ତି । ପ୍ରସିଦ୍ଧ ଗୋବିନ୍ଦ ରଥଙ୍କ ଗାଁ ପାଟପୁରର ଝିଅ ସେ । ବାପା ମଧୁସୂଦନ ମହାପାତ୍ର । ଏ ମଧ୍ୟରେ ୪ ବର୍ଷ ବିତିଯାଇଛି; ସ୍ୱପ୍ନ ଓ କଳ୍ପନାର ସ୍ୱର୍ଣ୍ଣବର୍ଷ, ମଧୁର ପ୍ରତୀକ୍ଷାର ୪ ବର୍ଷ । ଡ଼ଃ ତ୍ରିପାଠୀ ସେତେବେଳେ ପାଟନାରେ ପଞ୍ଚମ ବର୍ଷ ଶ୍ରେଣୀରେ ପଢୁଥାନ୍ତି । ସେ ଘରକୁ ଆସିଲେ ଖିରିଆ ପୁଆଣି ହୋଇ ଆସନ୍ତି । ମିଳନ ପ୍ରତ୍ୟାଶିତ । କିନ୍ତୁ ଭାଗ୍ୟ ପ୍ରତିକୂଳ ହେଲା । ଠିକ୍ ଆସିବା ଦିନ କିଶୋରୀ ନବବଧୂଟିଙ୍କ ଦେହରେ ସାଂଘାତିକ ବସନ୍ତ ରୋଗର ଚିହ୍ନ ଫୁଟି ଉଠିଲା । ବରବଧୂ ପରସ୍ପରକୁ ଭେଟିବାକୁ ସୁଯୋଗ ପାଇଲେ ନାହିଁ । ୫।୬ ଦିନ ରୋଗ ଭୋଗିବା ପରେ ବଧୂଟି ନୀରବରେ ଶ୍ମଶାନକୁ ଗଲେ, ଡ଼ଃ ତ୍ରିପାଠୀ ଫେରିଲେ ପାଟନା । ବିଧିବିଡ଼ମ୍ବନା ଅପ୍ରତିରୋଧ୍ୟ ଥିଲା ସେଦିନ । ପ୍ରତୀକ୍ଷା ଓ ପ୍ରତ୍ୟାଶା ଏମିତି ବିଡ଼ମ୍ବିତ ହୋଇଗଲା, ସ୍ୱପ୍ନ ଓ କଳ୍ପନା ମରିଗଲା । ତା ପରେ ଏମ୍. ଏ. ପାସ୍ କଲାପରେ ଡ଼ଃ ତ୍ରିପାଠୀଙ୍କର ବିବାହ ହୁଏ ବାଙ୍କି ହରିରାଜପୁର ଗାଁର ସୁରେଖା ଦେବୀଙ୍କ ସହିତ । ସୁରେଖା ଦେବୀ ତାଙ୍କର ପତ୍ନୀ ଓ ଗୃହଲକ୍ଷ୍ମୀ । ତାଙ୍କର ସବୁ ଉନ୍ନତି ମୂଳରେ ସେ । ବିବାହ ପରେ ପରେ ଡ଼ଃ ତ୍ରିପାଠୀ ଚାକିରି ପାଇଛନ୍ତି, ଧନ ଜନ ଗୋପଲକ୍ଷ୍ମୀରେ ଗୃହାଙ୍ଗନ ତାଙ୍କର ଭରିଯାଇଛି ଅଚିରେ । ସବୁ ଦିଗରୁ ଜୀବନ ତାଙ୍କ ପରିପୂର୍ଣ୍ଣ । ପତ୍ନୀଙ୍କ ପାଖରେ ବଡ଼ କୃତଜ୍ଞ ସେ । ତେବେ ଡ଼ଃ ତ୍ରିପାଠୀ ସେଦିନର ପାଇ ହରେଇବାର ଦୁଃଖଟିକୁ ଭୁଲି ପାରିନାହାନ୍ତି ବୋଧହୁଏ । ପ୍ରଥମ ପ୍ରେମ ପ୍ରଥମ ପ୍ରେମ । ପ୍ରିୟତମା ପ୍ରଥମ ପତ୍ନୀଟିର ମଧୁର ସ୍ମୃତିଟିକୁ ଭୁଲିବା ସମ୍ଭବ ନୁହେଁ । ତାଙ୍କ ଉଦ୍ଦେଶ୍ୟରେ ସମ୍ପାଦିତ 'ଧମ୍ମପଦ' ଗ୍ରନ୍ଥଟି ଉତ୍ସୃଷ୍ଟ । ସେଥିରେ ବି ଗୋଟିଏ ଆବେଗଭରା ସମର୍ପଣ-କବିତା ସଂଗ୍ରଥିତ, ଆବେଗ ପବିତ୍ର ଓ ବିଷାଦାକ୍ରାନ୍ତ, ଅଧିକନ୍ତୁ ଅନ୍ତରଙ୍ଗ ଓ ସ୍ୱପ୍ନମଧୁର । ସୁଦୂର ନକ୍ଷତ୍ରଲୋକର ଅଧିବାସିନୀ କିଶୋରୀ

ଝରିଆ, କନ୍ତୁ କେତେ ଆପଣାର ନୁହନ୍ତି ସେ ! ନିକଟରୁ ଡଃ ତ୍ରିପାଠୀ ତାଙ୍କୁ ଦେଖିଥିଲେ ମାତ୍ର । ଏବେ ଦୂରରୁ ବି ସେମିତି ଦେଖୁଛନ୍ତି । ଦୂରତ୍ୱ ତାଙ୍କୁ ସୁନ୍ଦର ଓ ମଧୁର କରିଛି, ଆଉ ସେମିତି ନିତ୍ୟ କିଶୋର କରି ରଖିଛି ମଧ୍ୟ ।

ଡଃ ତ୍ରିପାଠୀ ଏବେ ୮୩ ବର୍ଷରେ ପଦାର୍ପଣ କରିଛନ୍ତି । ବୟସ ପରିଣତ । ବିଦ୍ୟାବୁଦ୍ଧି ପରିଣତ । ମନ ଓ ହୃଦୟ ବି ପରିଣତ । ତପସ୍ୱୀଟିଏ ପରି ଜୀବନ କାଟୁଛନ୍ତି ସେ । କର୍ମନିଷ୍ଠା ଓ ଅଧ୍ୟୟନ ଶ୍ରଦ୍ଧା ଅବ୍ୟାହତ ଅଛି । ସାଧନାର ବିଗ୍ରହବନ୍ତ ପୁରୁଷ ସେ, ବେଶ୍ ମର୍ଯ୍ୟାଦାବନ୍ତ ବି । ଏମିତି ତାଙ୍କ ଜୀବନ ସୁସ୍ଥ, ପ୍ରଫୁଲ୍ଲ ଓ ନିରାମୟ ଥାଉ । ତାଙ୍କ ପୁଣ୍ୟଦର୍ଶନରୁ ଅଧ୍ୟାପକମାନେ ପ୍ରେରଣା ପାଆନ୍ତୁ, ଭଲ ଶିକ୍ଷକ, ଭଲ ଗବେଷକ ଓ ଭଲ ମଣିଷ ହୋଇ ଶିଖନ୍ତୁ ।



# ବଜ୍ରାଦପି କଠୋରାଣି
# ମୃଦୁନି କୁସୁମାଦପି

ଡ଼: ଶ୍ୟାମସୁନ୍ଦର ମିଶ୍ର

୧୯୫୪ ସାଲର ଶେଷଭାଗ । ମୁଁ ରେଭେନ୍‌ସା କଲେଜ ଓଡ଼ିଆ ଏମ୍. ଏ.ର ଶେଷ ବର୍ଷର ଛାତ୍ର ଥାଏ । ପୁରୁଣା କନିକା ଲାଇବ୍ରେରୀର ବାମ ଅଂଶରେ ଥିବା ଗୋଟିଏ ଛୋଟ କୋଠରୀରେ ଓଡ଼ିଆ ସେମିନାର ଥାଏ ଓ ସେଇଠାରେ ଷଷ୍ଠ ବାର୍ଷିକ ଶ୍ରେଣୀର କ୍ଲାସ ହେଉଥାଏ । ସେହି ବର୍ଷ ଓଡ଼ିଆ ବିଭାଗରୁ ଓଡ଼ିଆ ଭାଷା ଓ ସାହିତ୍ୟର ଜଣେ ପ୍ରବୀଣ ଗବେଷକ ତଥା ଓଡ଼ିଆ ଓ ସଂସ୍କୃତ ବିଭାଗର ମୁଖ୍ୟ ଡ଼ଃ କରୁଣାକର କର ଅବସର ନେଇଥାଆନ୍ତି ଏବଂ ଅନ୍ୟ ଦୁଇଜଣ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବ୍ୟକ୍ତି ଆମ ବିଭାଗରେ ଯୋଗ ଦେଉଥାଆନ୍ତି—ସେମାନେ ହେଲେ ଚୀନ୍‌ଦେଶର ପେକିଂ (ବର୍ତ୍ତମାନ ବେଇଜିଂ ବିଶ୍ୱବିଦ୍ୟାଳୟରୁ ଅଧ୍ୟାପନା କାର୍ଯ୍ୟ ସାରି ଫେରିଥିବା ଅଧ୍ୟାପକ ପ୍ରହ୍ଲାଦ ପ୍ରଧାନ ଏବଂ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ଭାଷା ବିଜ୍ଞାନରେ ଗବେଷଣା ପରେ ଫେରିଥିବା ଡ଼: କୁଞ୍ଜବିହାରୀ ତ୍ରିପାଠୀ ।

ସେତେବେଳକୁ ଓଡ଼ିଆ ସ୍ନାତକୋତ୍ତର ବିଭାଗର ଆୟୁକାଳ ଖୁବ୍ କମ୍—ମାତ୍ର ଦଶବର୍ଷ ହେବ । ସେଥିରେ ପୁଣି ଓଡ଼ିଆ ଓ ସଂସ୍କୃତ ମିଶି ଗୋଟିଏ ବିଭାଗ । ଅନ୍ୟାନ୍ୟ ପ୍ରତିଷ୍ଠିତ ବିଭାଗର ଛାତ୍ର ଓ ଶିକ୍ଷକମାନଙ୍କ ମଧ୍ୟରେ ପରମ୍ପରାଗତ ଭାବରେ ରହି ଆସିଥିବା ଓଡ଼ିଆ ବିଭାଗ ପ୍ରତି ହେୟଭାବକୁ ସେମାନେ ନିଜ ମଧ୍ୟରେ ଗୋପନ ରଖିବାକୁ ଚେଷ୍ଟା ମଧ୍ୟ କରୁ ନଥିଲେ । ସେତିକବେଳେ ଡ଼: ତ୍ରିପାଠୀ, ଯେ କି ଅତ୍ୟନ୍ତ ନମ୍ର ଓ ନିଜର ପରିଧାନ ଓ ବେଶବିନ୍ୟାସରେ ଅତ୍ୟନ୍ତ ସରଳ ସଦ୍ୟ ବିଲାତରୁ ଫେରିଥିବାରୁ ପ୍ୟାଣ୍ଟ, କୋଟ, ଟାଇ ପ୍ରଭୃତି ପିନ୍ଧି ଗୋଟିଏ ବାକ୍ସରେ ତାଙ୍କ ଗବେଷଣା କାଗଜପତ୍ର ଧରି ଲନ୍ ମଧ୍ୟଦେଇ ଷଷ୍ଠବାର୍ଷିକ ଶ୍ରେଣୀକୁ କନିକା ଲାଇବ୍ରେରୀକୁ ଯାଉଥିବ ବେଳେ ଅନ୍ତରାଳରୁ ତାଙ୍କ ପ୍ରତି

ନିଶ୍ଚିତ୍ତ କେତେକ ବନ୍ଧୁଙ୍କର ବାଣୀ ଆମେ ଶୁଣିପାରୁଥିଲୁ—ସେ କପରି ପୋଷାକ ପିନ୍ଧନ୍ତି, ତାଙ୍କ ବାକ୍‌ସତା କପରି ପୁରୁଣା ଇତ୍ୟାଦି ଇତ୍ୟାଦି । କ୍ରମେ କ୍ରମେ ତାଙ୍କ ନାଁରେ ଅତି ଚପଳ, ଇତର-ଜନୋଚିତ କୁତ୍ସାତ୍ମକ ଗଳ୍ପ ସବୁ ସୃଷ୍ଟି ହେଲା । ଆମେ ଜାଣୁଥିଲୁ ସେସବୁ ଗଳ୍ପ ସୃଷ୍ଟି ପଛରେ ଅଜ୍ଞତା ବା ହେୟଭାବ ଅପେକ୍ଷା ଅସୂୟା ଥିଲା ଅଧିକ, କାରଣ ସେ ଥିଲେ ଓଡ଼ିଆ ବିଭାଗର ଜଣେ ନିରାଡ଼ମ୍ବର କିନ୍ତୁ ଜ୍ଞାନ ଗମ୍ଭୀର ଶିକ୍ଷକ; କିନ୍ତୁ ଏବେ ଭାବିଲେ ଦୁଃଖ ଲାଗେ ଆମ ବିଭାଗର କେତେକ ବ୍ୟକ୍ତି ମଧ୍ୟ ସେସବୁ ଗଳ୍ପ ଶୁଣି ସେତେବେଳେ ଖୁବ୍ ଆନନ୍ଦ ପାଉଥିଲେ ।

ବିଲାତ ଫେରନ୍ତା ଡକ୍ଟର ତ୍ରିପାଠୀ ଯେଉଁ ଦିନ ପ୍ରଥମ କରି ଆମର ଶେଷ ବର୍ଷ କ୍ଲାସକୁ ଭାଷାତତ୍ତ୍ୱ ପଢ଼ାଇବାକୁ ଆସିଲେ ସେ ଦିନର କଥାସବୁ ଏବେ ବି ମୋ ମନର ଆକାଶରେ କୃଷ୍ଣମେଘ ଖଣ୍ଡପରି ଭାସୁଚି । ଆମେ ତାଙ୍କୁ ତାଙ୍କ ଗବେଷଣାତ୍ମକ କାର୍ଯ୍ୟକଳାପ ବା ବିଦ୍ୟାବତ୍ତା ସମ୍ପର୍କରେ ଖୁବ କମ୍ ପ୍ରଶ୍ନ କରି ଅନେକ ଅବାନ୍ତର କଥା ପଚାରିଥିଲୁ । କେତେକ ପିଲା ଦାନ୍ତରେ ହସକୁ ଚାପିଚୁପି ପଚାରିଥିଲେ—ଆପଣଙ୍କର ଲଣ୍ଡନରେ କେହି ବାନ୍ଧବୀ ଥିଲେ କି, ଆପଣ କେବେକେବେ ନାଇଟ୍ କ୍ଲବ୍ ଯାଆନ୍ତି କି ଇତ୍ୟାଦି । ତାଙ୍କ ସ୍ଥରରେ ଜଣେ ଗୁଣୀ ଜ୍ଞାନୀ ଅନ୍ୟ କୌଣସି ଅଧ୍ୟାପକଙ୍କୁ ଏ ପ୍ରଶ୍ନ ହୁଏତ ଅଧୈର୍ଯ୍ୟ କରିଥାନ୍ତା, କିନ୍ତୁ ସେ ତାଙ୍କ ସ୍ୱଭାବ ସୁଲଭ ହସହସ ମୁହଁରେ 'ହଁ' କି 'ନାଁ' ସଂକ୍ଷିପ୍ତ ଶବ୍ଦରେ ଉତ୍ତର ଦେଇସାରି ଧୀରସ୍ଥିର ଭାବରେ ନିଜର ପ୍ରଥମ ପାଠ୍ୟକ୍ରମ ଆରମ୍ଭ କରିଥିଲେ ।

•

ପୁଷ୍ପ ସାଗର ବେଳାରେ ନୋଳିଆ ଟୋକାମାନେ ଅଗଣିର ସମୁଦ୍ରରୁ ଉଠୁଥିବା ଲହରୀ ଉପରେ ଭାସି ତଟସ୍ଥ ଜନତାଙ୍କୁ ଦେଖାଇ ଦିଅନ୍ତି ସମୁଦ୍ର ଉପରେ ସେମାନଙ୍କ ଆଧିପତ୍ୟ କେତେ । ଆମେ ମଧ୍ୟ ସେହିପରି ଆତ୍ମପ୍ରସାଦ ଅନୁଭବ କରୁଥିଲୁ; କିନ୍ତୁ ଅଳ୍ପଦିନ ମଧ୍ୟରେ ଆମର ସେ ଭ୍ରାନ୍ତି ଭାଙ୍ଗିଗଲା । ଆମେ ଜାଣିଗଲୁ ଡ଼: ତ୍ରିପାଠୀ ଅଗଣିର

ପୁଷ୍ପ ସାଗର ନୁହନ୍ତି, ଗମ୍ଭୀର ଓ ପ୍ରଶସ୍ତ ପ୍ରଶାନ୍ତ ମହାସାଗର ଯେଉଁଠି ଭାସିବା ତ ଦୂରର କଥା ପହଞ୍ଚିପାରିବା ଆମପାଇଁ ଦୁଷ୍କର ।

ସାର୍ ହେଉଛନ୍ତି ଗୁରୁର ଗୁରୁତ୍ୱରେ ଗରୀୟାନ । ସ୍ନେହ ଛାତ୍ରବତ୍ସଳ ହୃଦୟରେ ସେ ଭାଷାତତ୍ତ୍ୱର ଜଟିଳତାକୁ ଛାତ୍ରମାନଙ୍କ ସ୍ମୃତିର ଝରକାରେ ଗୁମ୍ଫି ଦେବାପାଇଁ ଅନବରତ ଚେଷ୍ଟା କରିଛନ୍ତି । ଅଧ୍ୟାପନାର ପରିସୀମା ବାହାରେ ମଧ୍ୟ ନିଜ ଛାତ୍ରମାନଙ୍କୁ ସାହାଯ୍ୟ କରିବାକୁ ଯଥାସମ୍ଭବ ଚେଷ୍ଟା କରିଛନ୍ତି; କିନ୍ତୁ ସେ ସମସ୍ତ ନିଜ ନୈତିକତାର ମାନଦଣ୍ଡ ଭିତରେ । ସେ ପରିସୀମା ବାହାରେ ଯେଉଁମାନେ ତାଙ୍କଠାରୁ କିଛି ସାହାଯ୍ୟ ପାଇବା ପାଇଁ ଉଦ୍ୟମ କରିଛନ୍ତି ସେମାନଙ୍କ ପଛରେ ଶକ୍ତି, ବିତ୍ତ ବା କ୍ଷମତାର ଯେତେ ଦୃଢ ସମର୍ଥନ ଥାଉନା କାହିଁକି ସେମାନଙ୍କୁ ସେ ନିରାଶ କରିଛନ୍ତି । ସେ କ୍ଷେତ୍ରରେ ସେ ଅଚଳ ମେରୁ ପର୍ବତ ।

ତାଙ୍କୁ ଯେଉଁମାନେ ନିରୀହ ଶିକ୍ଷକଟିଏ ମନେକରି କିଛି ଅବହେଳାର ଢଙ୍ଗରେ ଦେଖୁଥିଲେ ବଲାଙ୍ଗିରର ରାଜେନ୍ଦ୍ର କଲେଜ ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଅଧ୍ୟକ୍ଷ ଭାବରେ ଜଣେ ଦୃଢ଼ପ୍ରତିଜ୍ଞ ଅନମନୀୟ ରୂପ ଦେଖି ନିଶ୍ଚୟ ଚମକିତ ହୋଇଥିବେ । ଆଜିର ଶିକ୍ଷା ବିଭାଗର ପ୍ରଶାସକମାନଙ୍କ ଭଳି ଅମଲାତନ୍ତ୍ରର କୁହେଳିକା ମଧ୍ୟରେ ଦିଗଭ୍ରାନ୍ତ ହୋଇଯିବାର ଲୋକ ସେ ନଥିଲେ । ପ୍ରଶାସନରେ, ବିଶେଷକରି ଆର୍ଥିକ ବ୍ୟାପାରରେ ଯେତେ ଚାପ ଆସୁ ପଛକେ, ନିଜେ ପ୍ରତ୍ୟେକଟି ବିଷୟ ତନଖି ନକରି ସେ ଛାଡ଼ୁ ନଥିଲେ । ସେଥିପାଇଁ କାହାର ନିନ୍ଦା ବା ଦ୍ୱେଷକୁ ତାଙ୍କର ଭ୍ରୂକ୍ଷେପ ନଥିଲା ।

ବ୍ୟକ୍ତିଗତ ଭାବରେ ମୁଁ ତାଙ୍କ ଦୟାର୍ଦ୍ର ଶିଷ୍ୟବତ୍ସଳତାର ସ୍ପର୍ଶ ଅନେକ ଥର ଲାଭ କରିଛି । ସେଇଥିରୁ ଅଳ୍ପ କେତୋଟିକୁ ଏବେ ମଧ୍ୟ ମନେ ରଖିପାରିଛି । ତାହା ଏହିପରି—

କଲେଜ ଜୀବନରେ ମୁଁ କେବେ ଅଧ୍ୟବସାୟୀ ଛାତ୍ର ନଥିଲି; ପୁଣି ଭାଷାତତ୍ତ୍ୱ ପାଠଟା ମତେ ସବୁଠାରୁ ବେଶି ଅଡୁଆ ଲାଗୁଥିଲା । ତାହାର କେତେକ ଅଂଶ ଥିଲା ମୋପାଇଁ ଗଣିତ ପରି ଅନାକର୍ଷଣୀୟ । ଏମ୍. ଏ. ଶେଷ ପରୀକ୍ଷାରେ ଭାଷାତତ୍ତ୍ୱ ପତ୍ରରେ ଯେଉଁ ଉତ୍ତର ଲେଖିଥିଲି ସେଥିରୁ ମୋର ଆଶଙ୍କା ହେଉଥିଲା ଯେ ମୋର ସେ ପେପରଟିକୁ ସମ୍ପୂର୍ଣ୍ଣ କାଟି ଦିଆଯିବ । ପରୀକ୍ଷା ଫଳ ବାହାରିଲା । ସେଇ ପେପରଟିରେ ମୁଁ ସବୁଠାରୁ ଅଧିକ ନମ୍ବର ପାଇଥିଲି । ପରେ ମୋର ବନ୍ଧୁ ଉଦ୍ୟୋଗୀ ସହପାଠୀମାନଙ୍କଠାରୁ ଶୁଣିଲି ସେ ପେପରଟିର ପରୀକ୍ଷକ ଥିଲେ ଡ଼. କୁଞ୍ଜବିହାରୀ ତ୍ରିପାଠୀ ।

ଆଉ ଥରକର କଥା । ସେତେବେଳେ ମୁଁ ଅଧ୍ୟାପକ ଚାକିରି ପାଇଁ ବିଭିନ୍ନ ସମୟରେ ପବ୍ଲିକ୍ ସର୍ଭିସ କମିଶନଙ୍କ ଦ୍ୱାରସ୍ଥ ହେଉଥାଏ । ସେଦିନ ଇଣ୍ଟରଭ୍ୟୁବେଳେ ଜାଣିଲି ପ୍ରଫେସର ତ୍ରିପାଠୀ ବୋର୍ଡ଼ରେ ବିଶେଷଜ୍ଞ ସଭ୍ୟରୂପେ ଆସିଛନ୍ତି । ମନରେ ଛନକା ପଶିଲା ! ସେ ତ ଭାଷାତତ୍ତ୍ୱର ସନ୍ଧି କଥା ସବୁ ପଚାରିବେ, କ'ଣ କରିବି ? ବୋର୍ଡ଼ର ଅନ୍ୟ ସଭ୍ୟମାନେ ଏଣୁତେଣୁ କିଛି ପଚାରିବା ପରେ ବିଶେଷଜ୍ଞଙ୍କ ପାଳି ପଡ଼ିଲା । ସେ ସାଧାରଣତଃ ପ୍ରାର୍ଥୀମାନଙ୍କୁ ୩/୪ ପ୍ରଶ୍ନ କରନ୍ତି, ସବୁଗୁଡ଼ିକ ଭାଷା ସମ୍ପର୍କୀୟ । ପ୍ରଥମ ଦୁଇଟି ପ୍ରଶ୍ନ ମୁଁ ଯଥାତଥା ଉତ୍ତର ଦେଇଦେଲି । ତୃତୀୟ ପ୍ରଶ୍ନଟି ଥିଲା—"ଓଡ଼ିଆରେ ଯେଉଁ 'ମଙ୍ଗରାଜ' ଶବ୍ଦଟି ସାଂଖ୍ୟାରୂପେ ବ୍ୟବହୃତ ହୁଏ ତାହାର ସୃଷ୍ଟି କପରି ?" ମୋ ମୁଣ୍ଡକୁ ଯେତେ ଅଣ୍ଡାଳିଲେ, ଘାଣ୍ଟିଲେ ମଧ୍ୟ କିଛି ଉତ୍ତର ପାଇଲି ନାହିଁ । ଶେଷକୁ ଠକାଠକି କରିବାକୁ ଚେଷ୍ଟା କରି କହିଲି—"ଏହା ସାମରିକ ଉପାଧି ବିଶେଷ ।" ସାର୍ କହିଲେ "ହଁ ଠିକ୍ କହିଚ । ଏହା ଏକ ସାମରିକ ଉପାଧି ।"

ଆଶ୍ୱାସନାର ଦୀର୍ଘଶ୍ୱାସଟିଏ ପକାଇଲି—ଯାହା କୌଣସିମତେ ସାର୍‌ଙ୍କୁ ଭୁଲାଇ ଦେଇ ପାରିଲି । କିନ୍ତୁ ସେ କଅଣ ସହଜରେ ଭୁଲିବା ଜୀବ ! ଟିକିଏ ପଜ୍ ନେଇ ପଚାରିଲେ—ସାମରିକ ଉପାଧି ନିଶ୍ଚୟ, ତେବେ ଶବ୍ଦଟିର ଭାଷାତାତ୍ତ୍ୱିକ ଉତ୍ପତ୍ତି କପରି ହେଲା ?

ବୋର୍ଡ଼ର ଏତେଗୁଡ଼ିଏ ସଭ୍ୟଙ୍କ ଆଗରେ ମୁଣ୍ଡ ପଛପଟ କୁଣ୍ଡେଇବାକୁ ଯିନା ସଙ୍କୋଚ ଲାଗୁଥିଲା କିନ୍ତୁ କିଂକର୍ତ୍ତବ୍ୟବିମୂଢ଼ତାର ଆବର୍ତ୍ତ ଭିତରେ ମୁଁ ବୁଡ଼ି ଯାଉଥିଲି । ମୋର ନୈରାଶ୍ୟ ଭାବ ସଂଭବତଃ ସାର୍‌ଙ୍କ ଦୃଷ୍ଟିକୁ ଏଡ଼ାଇ ପାରି ନଥିଲା । ଖିଅଟିଏ ଧରେଇ ଦେବାକୁ ଯାଇ ମୃଦୁ ହାସ୍ୟରେ ମୋତେ ପଚାରିଲେ "ଆଚ୍ଛା, ଓଡ଼ିଆ ଭାଷାରେ ସିଂହର ଅନ୍ୟ କି କି ପ୍ରତିଶବ୍ଦ ଅଛି ?" ମୁଁ ସଜାଗ ହୋଇ ଉଠିଲି । ବୁଡ଼ିଗଲା ଲୋକପାଇଁ ଏଇ ଖିଅଟି ତ କୁଟାଖିଅ ନଥିଲା, ଥିଲା କାଠ ଭେଲାଟିଏ । ଭଞ୍ଜ ସାହିତ୍ୟ ବିଶେଷ ପତ୍ରପାଇଁ ପ୍ରସ୍ତୁତ ହେଉଥିଲାବେଳେ ଆମେ ନାୟିକାର ରୂପ ବର୍ଣ୍ଣନା ପର୍ଯ୍ୟାୟରେ ସଂସ୍କୃତ ସାହିତ୍ୟରୁ ଉପମା ସଂଧାନ କରୁଥିଲୁ— "ଦ୍ୱିଜରାଜ ଗତି, ଗଜରାଜ ଗତି, ମୃଗରାଜ ବିରାଜିତ ମଧ୍ୟକଟି" ସ୍ମରଣରେ ଆସିଗଲା । ସଙ୍ଗେ ସଙ୍ଗେ ଉତ୍ତର ଦେଲି—"ସିଂହର ପ୍ରତିଶବ୍ଦମାନଙ୍କ ମଧ୍ୟରେ 'ମୃଗରାଜ' ଅନ୍ୟତମ" । ତା ପରେ ମୁଁ 'ମୃଗରାଜ' ଶବ୍ଦଟି କିପରି ଭାଷାତାତ୍ତ୍ୱିକ ସୂତ୍ରରେ 'ମଙ୍ଗରାଜ' ତଦ୍‌ଭବ ଶବ୍ଦରେ ପରିଣତ ହୋଇଛି ତାହା କହିଦେଇ ପାରିଲି । ସାର୍ ଅତି ସନ୍ତୋଷ ଭାବପ୍ରକାଶ କରି 'ହଁ ଠିକ୍' 'ହଁ ଠିକ୍' କହି ତାଙ୍କ ପ୍ରଶ୍ନ ପଚାରିବା କାର୍ଯ୍ୟକ୍ରମ ଶେଷ କଲେ । ସାକ୍ଷାତ୍‌କାରରୁ ଫେରିଲାବେଳେ ମୁଁ ମନ ମଧ୍ୟରେ ଅନୁଭବ କରୁଥିଲି ଯେପରି ସାର୍ ମୋ ପିଠିରେ ହାତ ଥାପୁଡ଼େଇ ମୋ ଉପରେ ସାନ୍ତ୍ୱନାର ବାଣୀ ବର୍ଷଣ କରୁଛନ୍ତି ।

୧୯୬୩ ମସିହା ଜୁନ୍ କିମ୍ବା ଜୁଲାଇ ମାସ । ସେତେବେଳେ ମୁଁ ନୂଆ ହୋଇ ଗଢ଼ା ଯାଉଥିବା ବାଣପୁର ଗୋଦ ବରୀଶ ମହାବିଦ୍ୟାଳୟର ଅଧ୍ୟକ୍ଷ ଦାୟିତ୍ୱରେ ଥାଏ । ସାଳିଆ ନଈକୂଳରେ ଖଣ୍ଡେ ଉଚ୍ଚ ଜାଗାରୁ ରାମଫଳ ଗଛର ଜଙ୍ଗଲ ସଫା ହୋଇ କଲେଜ ଘର ତିଆରି ପାଇଁ ନିଅଁ ଖୋଳା ଚାଲିଥାଏ । ଯୌବନର ସମସ୍ତ ଉଦ୍ଦାମତା ନେଇ ମୁଁ ସେସବୁ କାମର ଦେଖାରୁଣ୍ଡାରେ ଲାଗି ପଡ଼ିଥାଏ । ଗଛସବୁ ଉପଡ଼ା ହେଉଥିବାବେଳେ ସେଠାରୁ ଏକ ବିଶାଳ ପ୍ରାଚୀନ କୀର୍ତ୍ତିର ଧ୍ୱଂସାବଶେଷର ସଂଧାନ ମିଳିଲା । ସମ୍ଭବତଃ ରାହାଥିଲା ଏକ ବୌଦ୍ଧ ବିହାର ପ୍ରାୟ

୮ମ/୯ମ ଶତାବ୍ଦୀ ବେଳର ଯେତେବେଳେ ଓଡ଼ିଶାର ବହୁ ଅଞ୍ଚଳରେ ବୌଦ୍ଧଧର୍ମର ପ୍ରଭାବ ଥିଲା । ସେଇଁ କିଛି ଅଂଶ ଖୋଳା ହୋଇଥିଲା ସେଥିରୁ ପ୍ରଶସ୍ତ ଇଟା କାନ୍ଥଥିବା ଗୃହ ଓ ଅଗଣା ବାହାରୁଥିଲା । ସେଥିରେ ବିଭିନ୍ନ ଆକାର ପ୍ରକାରର ଇଟାସବୁ ବ୍ୟବହୃତ ହୋଇଥିଲା । ଗୋଟିଏ ଜାଗାରୁ ବିଭିନ୍ନ ଆକାରର ପ୍ରାୟ ତେରଖଣ୍ଡ ଦେବ ବୁଦ୍ଧ, ଉଗ୍ରତାରା ଓ ଅନ୍ୟାନ୍ୟ ବଜ୍ରଯାନ ଓ ତାନ୍ତ୍ରିକ ମୂର୍ତ୍ତିସବୁ ବାହାରିଲା । ସେ ସ୍ଥାନଟି ଥିଲା ଗୋଦାବରୀଶ ମହାବିଦ୍ୟାଳୟ ଓ ଗୋଦାବରୀଶ ବିଦ୍ୟାପୀଠ ନାମକ ଉଚ୍ଚ ବିଦ୍ୟାଳୟର ମଧ୍ୟବର୍ତ୍ତୀ ଅଞ୍ଚଳ । ଏହି ପ୍ରତ୍ନତାତ୍ତ୍ୱିକ ସନ୍ଧାନର ସମ୍ବାଦ ପାଇଁ କେନ୍ଦ୍ର ପ୍ରତ୍ନତତ୍ତ୍ୱ ବିଭାଗରୁ ଶ୍ରୀମନ୍ତ ଦେବବାଳା ମିତ୍ର ତାଙ୍କର ସହଯୋଗୀ ଜଣଙ୍କୁ ସାଙ୍ଗରେ ଧରି ସେଠାରେ ପହଞ୍ଚିଲେ । ସେଠାରୁ ମିଳୁଥିବା ଦ୍ରବ୍ୟ ସବୁକୁ ଅନ୍ୟ କୁଆଡ଼େ ନ ପଠାଇ ସେଠାରେ ଗୋଟିଏ ସଂଗ୍ରହାଳୟ ଗଢ଼ିବା ପାଇଁ ସେ ମୋତେ ପରାମର୍ଶ ଦେଲେ । ତଦ୍ଦ୍ୱାରା ସେ ଅଞ୍ଚଳର ପର୍ଯ୍ୟଟନ ଗୁରୁତ୍ୱ ବଢ଼ିବା ସଙ୍ଗେ ସଙ୍ଗେ ଖନନ ଦ୍ୱାରା ଓଡ଼ିଶା ଇତିହାସର ଅନେକ ନୂତନ ଅଧ୍ୟାୟ ମଧ୍ୟ ସୃଷ୍ଟି ହୋଇ ପାରିବ ବୋଲି ସେ କହିଥିଲେ ।

ଏସବୁ ଘଟଣା କିନ୍ତୁ କଲେଜର ତତ୍କାଳୀନ ପରିଚାଳନା ସମିତିର ସଭ୍ୟମାନଙ୍କୁ ବିଚଳିତ କଲା । କୌଣସି ପ୍ରକାରେ ସେମାନେ କଲେଜ ନିର୍ମାଣ କାମ ଶୀଘ୍ର ସାରିବାକୁ ଚାହୁଁଥିଲେ ଏବଂ ପ୍ରତ୍ନତାତ୍ତ୍ୱିକ ଖନନ ସେଥିରେ ବାଧା ସୃଷ୍ଟି କରିପାରେ ବୋଲି ଆଶଙ୍କା କରୁଥିଲେ । ଏସବୁ କାମପାଇଁ ସେମାନେ ମୋ ଉପରେ ଅସନ୍ତୋଷ ପ୍ରକାଶ କଲେ ଏବଂ ହାଇସ୍କୁଲର ତତ୍କାଳୀନ ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ କାଳିଆ ପାଣିଗ୍ରାହୀଙ୍କ ଉପରେ ଚାପ ପକାଇଲେ ଏସବୁ ଧନ୍ଦା ଶୀଘ୍ର ବନ୍ଦ କରିଦେବା ପାଇଁ । ଶ୍ରୀଯୁକ୍ତ ପାଣିଗ୍ରାହୀ ମୋ ସହ ପରାମର୍ଶ କରି ମିଳିଥିବା ସମସ୍ତ ମୂର୍ତ୍ତି ଓ ଦ୍ରବ୍ୟ ଭୁବନେଶ୍ୱର ସଂଗ୍ରହାଳୟକୁ ପଠାଇଲେ । ଅବଶ୍ୟ ସେସବୁ ଦ୍ରବ୍ୟର ଏକ ତାଲିକା ସେ ବର୍ଷର ହାଇସ୍କୁଲ ମୁଖପତ୍ରରେ ପ୍ରକାଶ ପାଇଥିଲା । ଏହା ପରେ ଖୋଳା ହୋଇ ବାହାରିଥିବା ଇଟାସବୁ

କଲେଜ ଘର ନିର୍ମାଣରେ ଲଗାଇ ଦିଆଗଲା, ଖନନ ସ୍ଥାନକୁ ପୋତି ଦିଆଗଲା । ବିଗତ ୩୦ ବର୍ଷ ମଧ୍ୟରେ କଲେଜରେ ଆଉ ଅନେକ ଘର ସେଇ ସ୍ଥାନରେ ନିର୍ମିତ ହୋଇଯିବଣି । ସେସବୁ ବର୍ତ୍ତମାନ ଇତିହାସର ମଶାଣି ଭୂଇଁ ଉପରେ କଳାପାହାଡ଼ର ସ୍ମୃତି ସୌଧପରି ଦିଶୁଥିବ ।

ଖନନ ସମୟରେ ମୁଁ ନିଜେ ଉପସ୍ଥିତ ଥିବାବେଳେ ମିଳିଥିବା ଗୋଟିଏ ଅତି ଅମୂଲ୍ୟ ଦ୍ରବ୍ୟ କିନ୍ତୁ ମୁଁ ସଂଗ୍ରହାଳୟକୁ ନପଠାଇ ନିଜ ନିକଟରେ ରଖିଥିଲି । ସେଇଟି ଗୋଟିଏ ବଡ଼ ତମ୍ବା ବଳୟରେ ଗୁନ୍ଥା ହୋଇଥିବା ବିରାଟକାୟ ତିନୋଟି ତମ୍ବାପଟା । ସେ ତମ୍ବାପଟାଗୁଡ଼ିକର ଲେଖାସବୁ ଶହଶହ ବର୍ଷବ୍ୟାପୀ ମାଟିଧରି ଅତି ଅସ୍ପଷ୍ଟ ଦିଶୁଥିଲା । ତାହାର ମାଧ୍ୟମରେ ଓଡ଼ିଶା ଇତିହାସର ଅଜ୍ଞାତ ଅଧ୍ୟାୟ ସଂପର୍କରେ କିଛି ଆଲୋକ ମିଳିପାରିବ ମନେକରି ମୁଁ ଡ଼ଃ କୁଞ୍ଜବିହାରୀ ତ୍ରିପାଠୀଙ୍କ ନିକଟକୁ ପତ୍ର ଲେଖିଲି ବାଣପୁର ଆସିବା ପାଇଁ । ପତ୍ର ପାଇବାମାତ୍ରେ ସେ ବାଣପୁରରେ ମୋ ନିକଟରେ ଉପସ୍ଥିତ ହେଲେ । ଅତି ଆଗ୍ରହର ସହ ସେ ତମ୍ବାପଟାଗୁଡ଼ିକୁ ମୋଠାରୁ ଗ୍ରହଣ କଲେ । ରସାୟନିକ ପଦ୍ଧତିରେ ପରିଷ୍କାର କରାଇ ଶୁଦ୍ଧ ପାଠକଲେ ଏବଂ ସେ ସମ୍ପର୍କରେ ବିସ୍ତୃତ ପ୍ରବନ୍ଧ ୧୯୬୪ ରେ 'ଝଙ୍କାର' ପତ୍ରିକାରେ ପ୍ରକାଶ କରାଇଲେ । ସେହି ପ୍ରବନ୍ଧରେ ମୋର ନାମ ଉଲ୍ଲେଖ କରିଥିଲେ; ତାହାଥିଲା ତାଙ୍କର ମୋପ୍ରତି ଅସୀମ ଅନୁକମ୍ପା । ଏହି କାର୍ଯ୍ୟପାଇଁ ମୁଁ କଲେଜ ପରିଚାଳନା ସ୍ତରରେ ବହୁ ଝଡ଼ଝଞ୍ଜା ଓ ଓଡ଼ିଶାର ସମଗୋଷ୍ଠୀର କେତେକ ବୁଦ୍ଧିଜୀବୀଙ୍କର ବହୁ ସମାଲୋଚନାର ଶରବ୍ୟ ହୋଇଛି । ସେସବୁ ଉଲ୍ଲେଖ ଏଠାରେ ଅନାବଶ୍ୟକ । କେତେ ବର୍ଷ ପରେ ଥରେ ମୁଁ ସାରଙ୍କୁ ସେ ତମ୍ବାପଟାଗୁଡ଼ାକ ସମ୍ପର୍କରେ ପଚାରିଥିଲି । ସେ କହିଲେ ଯେ ସେ ସବୁକୁ ସେ ପ୍ରବନ୍ଧ ରଚନା ପରେ ବାଣୀବିହାରର ଇତିହାସ ବିଭାଗକୁ ହସ୍ତାନ୍ତରିତ କରି ଦେଇଛନ୍ତି । ତାହାହିଁ ବୋଧହୁଏ ଯଥାର୍ଥ ପନ୍ଥା ଥିଲା ।

ସାର୍‌ଙ୍କ ସହକର୍ମୀ ହେବାର ସୁଯୋଗ ମୋର ଘଟିଲା ନାହିଁ କିନ୍ତୁ ବ୍ରହ୍ମପୁର, କଟକ ଓ ଭୁବନେଶ୍ୱରରେ ବହୁବାର ବହୁ ଅବସରରେ ତାଙ୍କ ସହ ସାକ୍ଷାତ ହୁଏ । ଯେତେବେଳେ ଏକାନ୍ତରେ ଭେଟିଯାଉ ସେ ମୋତେ କୁଶଳ ପ୍ରଶ୍ନ କରନ୍ତି । ସେ ପ୍ରଶ୍ନ ପାରମ୍ପରିକ ସ୍ତରରେ ମୋ ପରିବାର, ସ୍ୱାସ୍ଥ୍ୟ, ସ୍ତ୍ରୀକନ୍ୟା, ଦରମା ଇତ୍ୟାଦି ବିଷୟରେ ନୁହେଁ । ତାହା ହେଉଛି ମୁଁ କେଉଁ ବିଷୟରେ ଗବେଷଣା କରୁଛି । ଏମ୍. ଏ. ଶ୍ରେଣୀରେ କୋଉ ବିଷୟ ପଢ଼ାଉଛି ଆଉ କିଛି ଲେଖାଲେଖି କରୁଛି କି ନା ଇତ୍ୟାଦି । ଜଣାପଡ଼େ ଯେମିତି ସେ ସବୁବେଳେ ନିଜ ଜ୍ଞାନରାଜ୍ୟର ବଳୟ ମଧ୍ୟରେ ବାସ କରୁଛନ୍ତି । ସେ ଏକାକୀ ଚାଲୁଥିବା ବା ବସିଥିବାବେଳେ ତାଙ୍କୁ ଅନୁସରଣ କରୁଥିବା ବ୍ୟକ୍ତି ବେଳେ ବେଳେ ଦେଖେ ଯେ ସେ ଓଡ଼ିଆ ବର୍ଣ୍ଣମାଳାର କୌଣସି ଗୋଟିଏ ବର୍ଣ୍ଣକୁ ବା ଶବ୍ଦକୁ ବିଭିନ୍ନ ଭଙ୍ଗୀରେ ମନେ ମନେ ବା ଅସ୍ଫୁଟ ସ୍ୱରରେ ବାରମ୍ବାର ଆବୃତ୍ତି କରୁଛନ୍ତି । ଭାଷାତତ୍ତ୍ୱର ଏହି ଚଳନ୍ତି ଜ୍ଞାନକୋଷଙ୍କ ସହ ଯେ ପରିଚିତ ନଥିବେ ସେ ହୁଏତ ମନେକରିବେ ଏ ଜଣେ ଅତ୍ୟନ୍ତ ଅନ୍ୟମନସ୍କ ବା ପାଗଳ ବ୍ୟକ୍ତି । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଜ୍ଞାନର ତୃଷା ନିବାରଣ କରିବା ପାଇଁ ସଙ୍କଳ୍ପ ଗ୍ରହଣ କରିଥିବା ଲୋକଙ୍କୁ ଏକପ୍ରକାର ପାଗଳ ହିଁ କୁହାଯାଇପାରେ ।

ମୋର ଅବସର ନେବାର କିଛିଦିନ ପୂର୍ବରୁ ଥରେ ସାର୍‌ଙ୍କ ସଙ୍ଗେ ଭେଟ ହୋଇଥିଲା । କଲେଜ ଛକ ଷ୍ଟେଟବ୍ୟାଙ୍କ ପରିସରରେ । ଜଣେ ବ୍ୟାଙ୍କ କର୍ମଚାରୀଙ୍କ ନିକଟରେ ବସି ସେ କ'ଣ ଆଲୋଚନା କରୁଥିଲେ । ମୁଁ ନମସ୍କାର କଲାରୁ ଚଉକିରୁ ଉଠି ମୋ ପାଖକୁ ଚାଲି ଆସିଲେ । ପୂର୍ବପରି କୁଶଳ ପ୍ରଶ୍ନ ପରେ ପଚାରିଲେ, "ମୋର ତୁମକୁ ଗୋଟାଏ ଅନୁରୋଧ, ରକ୍ଷା କରିବ ?"

ମୁଁ ଆକାଶରୁ ପଡ଼ିବାପରି ହୋଇ ପଡ଼ିଲି । ମୋପରି ଜଣେ ବ୍ୟକ୍ତି ପାଖରେ ସାର୍‌ଙ୍କର କିଛି ଅନୁରୋଧ ଥାଇପାରେ । ଅତି ସନ୍ତର୍ପଣରେ ପଚାରିଲି, "କଅଣ ଆଜ୍ଞା" ?

—"ତୁମେ ପରୀକ୍ଷା ଖାତା ଦେଖୁଥିବ, ଶଫ୍ ହେଉଥିବ ।"

ଆଜକାଲି ଜଣେ କଲେଜ ଶିକ୍ଷକଙ୍କୁ ଏକଥା ପଚରାଗଲେ ପ୍ରଶ୍ନକର୍ତ୍ତାଙ୍କର ଉଦ୍ଦେଶ୍ୟ କ'ଣ ଥାଏ ତାହା ମୁଁ ଜାଣିନି ପ୍ରତ୍ୟେକ ଶିକ୍ଷକ ଭଲକରି ଜାଣନ୍ତି । ତେବେ ଶିକ୍ଷକୀୟ ଆଦର୍ଶର ସର୍ବୋତ୍ତମ ଶୀର୍ଷରେ ଥିବା ବ୍ୟକ୍ତିର ଉଦ୍ଦେଶ୍ୟ କଅଣ ସେଇଆ ? ମୁଁ ଶଙ୍କାଗ୍ରସ୍ତ ହୋଇପଡିଲି । ତଥାପି ଉତ୍ତର ଦେଲି—"ହଁ ଆଜ୍ଞା ।"

—"ପିଲାମାନଙ୍କୁ ସବୁବେଳେ ଖୋଲାହାତରେ ଭଲମାର୍କ ଦେଉଥିବ । କେବେ କଠୋର ହେବ ନାହିଁ ।"

ମୁଁ କିଛି ସମୟ ଅପେକ୍ଷା କଲି । ଭାବିଲି ସାର୍ ବୋଧହୁଏ ଅସଲ କଥା ଆଉ କିଛି କହିବେ କିନ୍ତୁ ସେ ଧୀରେ ଧୀରେ ଯିବାକୁ ପାଦ ବଢ଼ାଇଲେ ।

ଅଶୀତିପର ବୟସ୍କ ଶିକ୍ଷକଙ୍କ ଏକ ନୂତନ ରୂପକୁ ମୁଁ ଅବାକ୍ ହୋଇ ଚାହିଁ ରହିଥିଲି ଜ୍ଞାନର ଶୁଷ୍କ ସୈକତ ଶଯ୍ୟାତଳେ ବାତ୍ସଲ୍ୟର ସ୍ନିଗ୍ଧ ଫଲ୍‌ଗୁ ଧାଉଁଛିଏ !

କହିଲି—"ଆପଣଙ୍କର ଆଦେଶ ନିଶ୍ଚୟ ପାଳନ କରିବ ।"

କାହିଁକି ତାଙ୍କର ଆମମାନଙ୍କ ପ୍ରତି ଏତେ ଆସ୍ଥା ଜାଣେନା । ବେଳେ ବେଳେ ଇଚ୍ଛା ହୁଏ ତାଂକୁ ମୁଁ ଭୁଣ୍ଡଖୋଲି କହିଦିଅନ୍ତି, "ସାର୍ ମୁଁ ଆପଣଂକର ସେଇ ଅଧମ ଛାତ୍ରଗୋଷ୍ଠୀରୁ ଜଣେ ଯେଉଁମାନେ ଦିନେ ଅର୍ବାଚୀନର ଚପଳତାରେ ଆପଣଙ୍କୁ ଲଣ୍ଡନର ନାଇଟ କ୍ଲବ କଥା ପଚାରି ଗ୍ରାମୀଣ ଆନନ୍ଦ ଉପଭୋଗ କରୁଥିଲେ । ଆମକୁ କ୍ଷମାକରି ଦିଅନ୍ତୁ ।

ମିଶ୍ରଲେନ୍
ଝାଞ୍ଜିରୀମଙ୍ଗଳା, କଟକ-୯

# ପ୍ରଫେସର କେବଟୀଙ୍କ ଦର୍ଶନ ଓ ଶିକ୍ଷାନୀତି

ଡଃ ଭ୍ରମରବର କେନା

## ଗବେଷକ ରତ୍ନ :

ପ୍ରଫେସର ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ (କେବଟୀ) ଜଣେ ବିଖ୍ୟାତ ଶିକ୍ଷାବିତ୍, ନର୍ମଗର୍ଭ ଭାଷାବିତ୍, ବିଜୃମ୍ଭିତ ଗବେଷକ, ଶଙ୍କାଶୂନ୍ୟ-କୃତସଙ୍କଳ୍ପ ଅନୁଶାସନପ୍ରିୟ ଅଧ୍ୟାପକ ଏବଂ ସର୍ବୋପରି ଏକ ଧର୍ମଜ୍ଞ ପୁରୁଷୋତ୍ତମ ବ୍ୟକ୍ତିତ୍ୱର ପଂକ୍ତିକଳ୍ପ ମୂର୍ତ୍ତି । ନୀତିବାନ୍ ଅଧ୍ୟାପନା ଯୋଗୁଁ ସେ ସର୍ବଜନବନ୍ଦ୍ୟ ଓ ଛାତ୍ରବତ୍ସଳ ରୂପେ ସମାଦୃତ । ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ ଡିଗ୍ରୀ ହାସଲ କରି ସେ ଓଡ଼ିଆ ସାହିତ୍ୟ ସେବାରେ ନିୟୋଜିତ ହୋଇଥିଲେ । ସଂସ୍କୃତ ଭାଷା ସହ ଓଡ଼ିଆ ଭାଷାର ଯେଉଁ ପ୍ରମିତ ସଂପର୍କ ରହିଛି ତାର ଜୀବନ୍ତ ପରିପ୍ରକାଶ ହୋଇଛନ୍ତି ଡକ୍ଟର ତ୍ରିପାଠୀ । ପରମ୍ପରା ଓ ମୂଲ୍ୟବୋଧଭିତ୍ତିକ ଚରିତ୍ର ଗଠନରେ ସେ ବିଶ୍ୱାସୀ ଥିଲେ । ଶୃଙ୍ଖଳା, ମାନବିକତା ଓ ଧର୍ମନିଷ୍ଠା ଦ୍ୱାରା ଅନୁଷ୍ଠାନମାନଙ୍କର ସଫଳତା ହୋଇପାରେ ବୋଲି ସେ ବିଶ୍ୱାସ କରନ୍ତି । ତାଙ୍କ ଶିକ୍ଷକତା ଜୀବନର ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱ ସମୟ କେବଳ ଗବେଷଣାରେ ଉତ୍ସର୍ଗୀକୃତ । ଦେଶ ବିଦେଶରେ ଓଡ଼ିଆ ଶିଳାଲିପି ସମ୍ବନ୍ଧୀୟ ଗବେଷଣା ପାଇଁ ସେ ପ୍ରଶଂସିତ ଓ ଆଦୃତ । ବହୁ ଗବେଷଣାତ୍ମକ ପ୍ରବନ୍ଧ ମାଧ୍ୟମରେ ଓଡ଼ିଶାର ଗୌରବ ଓ ଐତିହ୍ୟକୁ ସେ ବିଶ୍ୱଦରବାରରେ ସମ୍ମାନିତ କରିଛନ୍ତି । ସେଥିପାଇଁ ଓଡ଼ିଆ ଜାତିର ସେ ନମସ୍ୟ । ଆମେରିକାର କଂଗ୍ରେସ ଲାଇବ୍ରେରୀର ଓଡ଼ିଆ ଭାଷା ବିଭାଗର ସଂଗୃହୀତ ପୁସ୍ତକମାନଙ୍କ ମଧ୍ୟରେ ଡକ୍ଟର ତ୍ରିପାଠୀଙ୍କ ଲେଖନୀ-ପ୍ରସୂତ ପୁସ୍ତକ ଓ ଲେଖା ବିଶେଷ ଅଗ୍ରାଧିକାର ସ୍ଥାନ ପାଇଛି । ତାଙ୍କୁ

ସେହି କଂଗ୍ରେସ ଲାଇବ୍ରେରୀରୁ ଅନେକ ଗବେଷକ ଉକ୍ତମୁକ୍ତ ନମସ୍କାର କରନ୍ତି ।

## ଭାଷା ସେନାପତି :

ସ୍ୱାଧୀନ ଭାରତରେ ବିଭିନ୍ନ ସମୟରେ ଶିକ୍ଷାନୀତି ପ୍ରବର୍ତ୍ତିତ ହୋଇଛି । କେତେବେଳେ ବିଜ୍ଞାନ ଉପରେ ଗୁରୁତ୍ୱ ଓ ଅଗ୍ରାଧିକାର ତ କେତେବେଳେ ଧନ୍ଦାମୂଳକ ଶିକ୍ଷାଦାନ ଉପରେ ରାଷ୍ଟ୍ରୀୟ କଳସ ଢଳାଯାଉଛି । ସବୁ ସମୟରେ ଆଧୁନିକ ଭାରତୀୟ ଭାଷାକୁ ଗୌଣସ୍ଥାନ ଦିଆଯାଉଛି । ତୃତୀୟ ଯୋଜନା କାଳର କଥା । ଓଡ଼ିଶାରେ ବିଜ୍ଞାନ ଶିକ୍ଷା ପ୍ରସାର ଉପରେ ଅଗ୍ରାଧିକାର ଦିଆଯାଉଥାଏ । ଫଳରେ ଶିକ୍ଷାଖର୍ଚ୍ଚର ଅଧିକ ଅଂଶ ବିଜ୍ଞାନ ଶିକ୍ଷକ ଓ ବିଜ୍ଞାନାଗାର ତଥା ବିଜ୍ଞାନ ପାଠାଗାର ପ୍ରସାର ପାଇଁ ବଜେଟରେ ବ୍ୟବସ୍ଥା କରାଯାଉଥାଏ । ଏହାର ଫଳ ସ୍ୱରୂପ ଖର୍ଚ୍ଚକାଟର ଆବଶ୍ୟକତା ଦେଖାଦେଲା । ତତ୍କାଳୀନ ଶିକ୍ଷା ବିଭାଗର କର୍ମକର୍ତ୍ତାଙ୍କ ମୁଣ୍ଡକୁ ଗୋଟିଏ ଚମତ୍କାର ସମାଧାନ ସୂତ୍ର ଯୁଟିଗଲା । ଏ ସମାଧାନ ସୂତ୍ରକୁ ବିଶ୍ୱବିଦ୍ୟାଳୟ ଶିକ୍ଷା ପରିଷଦ ମାଧ୍ୟମରେ ପ୍ରବର୍ତ୍ତନ କରାଇବା ପାଇଁ କର୍ମକର୍ତ୍ତାମାନେ ଲାଗିପଡିଲେ । ଏହି ସୂତ୍ର ପ୍ରବର୍ତ୍ତନ କରିବାକୁ ହେଲେ ଓଡିଆ ବିଭାଗ ମୁଣ୍ଡରେ କଡିଆ ଭଙ୍ଗାଯିବା ପାଇଁ ପ୍ରସ୍ତାବ ହେଲା ଯେ ଓଡ଼ିଆ ଶିକ୍ଷାପାଇଁ କଲେଜରେ ଯେତିକି ପିରିୟଡ଼ ଦିଆଯାଉଛି ତାହା ଆବଶ୍ୟକ ନାହିଁ । ତାକୁ କମାଇ ସପ୍ତାହରେ "ୱାର୍କଲୋଡ"କୁ ନିମ୍ନସଂଖ୍ୟାରେ ପରିଣତ କଲେ, ଶିକ୍ଷକ ନିଯୁକ୍ତିର ପରିମାଣ କମିଯିବ । ଟଙ୍କା ବଞ୍ଚିବ ଓ ବିଜ୍ଞାନ ଖର୍ଚ୍ଚର କେତେକ ଅଂଶ ଏହାଦ୍ୱାରା ଭରଣା କରିହେବ । ଏହି ମାରାତ୍ମକ ସୂତ୍ର ପ୍ରବର୍ତ୍ତନ ପାଇଁ ପ୍ରସ୍ତାବ ଆଲୋଚିତ ହେବା ସମୟରେ ମାତୃଭାଷାର ସୁରକ୍ଷା ପାଇଁ ତତ୍କାଳୀନ ରେଭେନ୍ସା କଲେଜର ଓଡ଼ିଆ ବିଭାଗର ମୁଖ୍ୟ ପ୍ରଫେସର କୁଞ୍ଜବିହାରୀ ତ୍ରିପାଠୀ ଏକ ଯୁଦ୍ଧ ଘୋଷଣା କଲେ । ଓଡ଼ିଆ ବିଭାଗର ୱାର୍କ-ଲୋଡ଼ କମାଇ, ଶିକ୍ଷକ ନିଯୁକ୍ତିର ପରିସର କମାଇବାର ଚକ୍ରାନ୍ତକୁ ପଣ୍ଡକରିବା ପାଇଁ ନିଜେ ଘର ଘର ବୁଲି ସହକର୍ମୀଙ୍କ ସାହାଯ୍ୟ ଲୋଡ଼ିଲେ । ଏହି ଯୁଦ୍ଧରେ ଅନ୍ୟ ବିଭାଗର ଓଡିଆ ପ୍ରେମୀମାନଙ୍କର ବହୁ ସମର୍ଥନ ମିଳିଥିଲା ।

ଓଡ଼ିଆ ଭାଷାର ସଙ୍କୋଚନ ଚକ୍ରାନ୍ତକାରୀମାନଙ୍କର କୁଦୃଷ୍ଟିର ଶିକାର ହୋଇ ମଧ୍ଯ ଭାଷା ସେନାପତି ଡକ୍ଟର 'କେବଟୀ' ନିଜ ତରବାରୀ ଚଳାଇବାରେ ହେଳା କରିନଥିଲେ । ଫଳରେ ଏକାଡେମିକ କାଉନ୍‌ସିଲରେ ଓଡ଼ିଆ-ଓ୍ୟାର୍କଲୋଡ଼ କମାଇବାର ପ୍ରସ୍ତାବ ଗୃହୀତ ହୋଇପାରିଲା ନାହିଁ । ଓଡିଆଭାଷା-ସେନାପତି ହସି ହସି ବାହାରକୁ ଆସି ଅପେକ୍ଷାରତ ସମର୍ଥକମାନଙ୍କୁ "ଭାଷା-ସୁରକ୍ଷିତ" ବୋଲି କହି ସମସ୍ତଙ୍କର ପ୍ରଶଂସାର୍ହ ହୋଇଥିଲେ । ସେହିଦିନଠାରୁ ଓଡ଼ିଆ ଭାଷା ଉପରେ କୌଣସି ବିପତ୍ତି ପଡିଲେ, ସେ ସରକାରଙ୍କୁ ସହଜରେ ଛାଡିଦେଉ ନାହାନ୍ତି । ଭାଷା-ସମିତି ମଧ୍ୟ ତାଙ୍କର ଏକ ସୃଷ୍ଟି । ଏହି ଅନୁଷ୍ଠାନ ଓଡିଆ ଭାଷାର ସ୍ୱାର୍ଥରକ୍ଷା ପାଇଁ ଏକ ବଳିଷ୍ଠ ସେନାରୂପେ ଡକ୍ଟର ବିପ୍ରଠୀଙ୍କ ସେନାପତିତ୍ୱରେ କାର୍ଯ୍ୟ କରୁଛି । ବିଜ୍ଞାନ ପ୍ରଚାର ଓଡିଆ ଭାଷା ମାଧ୍ୟମରେ ହେଉ ଓ ଏଥିପାଇଁ ଓଡିଆ ଭାଷାର ପଠନ, ପରୀକ୍ଷା ଏବଂ ପ୍ରସାର ପାଇଁ ସେ ପ୍ରବଳ ଉଦ୍ୟମ କରି ସଫଳ ହୋଇଛନ୍ତି । ତାଙ୍କୁ ଓଡିଆ ଭାଷାର ସେନାପତି ପଦବୀରେ ଭୂଷିତ କରିବା ଦ୍ୱାରା ତାଙ୍କର ଅବଦାନପ୍ରତି ସମ୍ମାନ ଦେଖାଇ ଦିଆଯାଇ ପାରିବ ।

## ମାତୃଭାଷା ମାଧ୍ଯମରେ ଶିକ୍ଷାଦାନ ବ୍ୟବସ୍ଥାର ସୂତ୍ରଧର :

ଡକ୍ଟର କେବଟୀଙ୍କର ଶିକ୍ଷାନୀତିର ପ୍ରଧାନ ବୈଶିଷ୍ଟ୍ୟ ହେଉଛି ଯେ ପ୍ରତ୍ୟେକ ଛାତ୍ର ନିଜର ମାତୃଭାଷା ମାଧ୍ୟମରେ ଉଚ୍ଚଶିକ୍ଷା ପାଇବା ପାଇଁ ହକଦାର । ତେଣୁ ସମାଜ ବିଜ୍ଞାନ, ବିଜ୍ଞାନ, ଗଣିତ ଆଦି ସମସ୍ତ ବିଷୟ ମାତୃଭାଷା ମାଧ୍ୟମରେ ଶିକ୍ଷା ଦିଆଯିବାର ବ୍ୟବସ୍ଥା ପାଇଁ ସେ ସର୍ବଦା ନିଜର ବହୁ ଯୁକ୍ତି ଦର୍ଶାଉ ଥାଆନ୍ତି । କୋଠାରୀ କମିଶନର ସୁପାରିଶ ଏ ବିଷୟରେ ତାଙ୍କ ଯୁକ୍ତିକୁ ସମର୍ଥନ କରିଥାଏ । ଯେତେବେଳେ ଏ ବିଷୟରେ ଆଲୋଚନା କରାଗଲା ଏବଂ କେନ୍ଦ୍ର ସରକାର ମାତୃଭାଷା ମାଧ୍ୟମର ପୃଷ୍ଠପୋଷକ ରୂପେ ରାଜ୍ୟସରକାରମାନଙ୍କ ଉପରେ ଚାପ ପକାଇଲେ, ସେତେବେଳେ ଡକ୍ଟର କେବଟୀ ଓଡିଶାର ଶିକ୍ଷାବିଭାଗର କର୍ମକର୍ତ୍ତାଙ୍କ ଉପରେ ପ୍ରବଳ ପ୍ରଭାବ ପକାଇ ଏହି ନୀତିକୁ କାର୍ଯ୍ୟକାରୀ

କରିବା ପ୍ରକ୍ରିୟାକୁ ଉନ୍ନତ କରିଥିଲେ । ଏ ସବୁ ଅବଦାନ ନୀରବ କର୍ମୀଙ୍କ ପାଇଁ ମାତୃଭାଷାର ସେବାରୂପେ ଗଣ୍ୟ ହୋଇଥାଏ । ଯେଉଁ ଅଧ୍ୟାପକମାନେ ଓଡ଼ିଆରେ ନିଜ ନିଜ ବିଷୟ ଉପରେ ପାଠ୍ୟପୁସ୍ତକ ଲେଖିଥିଲେ ଏବଂ ଡକ୍ଟର କେବିଷ୍ଟୀଙ୍କ ପାଖକୁ ତାର ସଂଶୋଧନ ପାଇଁ ଯାଉଥିଲେ, ଡକ୍ଟର ତ୍ରିପାଠୀ ନିଃସଙ୍କୋଚରେ ଏକ ମିଶନାରୀ ରୂପେ ବହୁ ସମୟ ଦେଇ ସଂଶୋଧନ କରୁଥିଲେ ଏବଂ ଭାଷାନ୍ତରରେ ସାହାଯ୍ୟ କରୁଥିଲେ । ଅନେକ ଯୁବ ଅଧ୍ୟାପକ ଓ ଅଧ୍ୟାପିକା ଏହାର ସାକ୍ଷୀ ରହିଛନ୍ତି ।

## ଶୃଙ୍ଖଳିତ ପରୀକ୍ଷା ପରିଚାଳକ :

ଓଡ଼ିଶାର ଯୁବସମାଜକୁ ବୌଦ୍ଧିକ ସ୍ତରରେ ଉଚ୍ଚମାନ ରକ୍ଷାକରିବା ପାଇଁ ଶିକ୍ଷାଦାନର ମାନ ଯେତିକି ଉନ୍ନତ ହେବ, ତାଠାରୁ ଅଧିକ ପରୀକ୍ଷାରେ ଶୃଙ୍ଖଳା ଓ ମୂଲ୍ୟାୟନ ପ୍ରଣାଳୀରେ ସାଧୁତା ପ୍ରକଟିତ ହେବା ଦରକାର ହେଉଛି ଡକ୍ଟର ତ୍ରିପାଠୀଙ୍କ ଶିକ୍ଷାମନ୍ତ୍ରର ଏକ ପ୍ରଧାନ ଅଙ୍ଗ । ଶିକ୍ଷକଙ୍କ ସମୟାନୁବର୍ତ୍ତିତା ଓ ଶୃଙ୍ଖଳା ସହ ପରୀକ୍ଷା ପରିଚାଳନାରେ ଦୃଢ଼ତା ତାଙ୍କ ଶିକ୍ଷା ମନ୍ତ୍ରର ଏକ ବୈଶିଷ୍ଟ୍ୟ । ସେ ଯେଉଁ ସ୍ଥାନରେ ଅଧ୍ୟକ୍ଷ ବା ଅଧୀକ୍ଷକ ହୋଇଛନ୍ତି ସେଠାରେ ଶିକ୍ଷାଦାନ ଓ ପରୀକ୍ଷା-ପରିଚାଳନାରେ ଦୃଢ଼ ଶୃଙ୍ଖଳା ପ୍ରୟୋଗ କରି କୃତକାର୍ଯ୍ୟ ହୋଇଛନ୍ତି । ଥରେ ସମ୍ବଲପୁର ମହାବିଦ୍ୟାଳୟରେ ଜଣେ ଛାତ୍ର ଅସତ୍ ଉପାୟ ଅବଲମ୍ବନ କରିବା ପାଇଁ ଉଦ୍ୟମ କରି ଧନ ଧନ ପରିସ୍ତା କରିବାକୁ ଅନୁମତି ମାଗିବାରୁ ତାକୁ ଅଧୀକ୍ଷକ ଡକ୍ଟର ତ୍ରିପାଠୀ ମଞ୍ଜୁର କଲେ ନାହିଁ । ଛାତ୍ର ଜଣକ ଦାଦାଗିରି କରି ସେହି ପରୀକ୍ଷା ହଲରେ ପରିସ୍ତା କରି ସମସ୍ତଙ୍କୁ ଗାଳିଗୁଲଜ କଲା । କିନ୍ତୁ ପରୀକ୍ଷା[illegible] କପି ସଂଗ୍ରହ କରିପାରିଲା ନାହିଁ । ଡକ୍ଟର ତ୍ରିପାଠୀ ସାରସ୍ୱତ ମନ୍ଦିରକୁ ଅମର୍ଯ୍ୟାଦା ଦର୍ଶନ କରିବା ଅପରାଧରେ ଉକ୍ତ ଛାତ୍ରକୁ ପରୀକ୍ଷା ହଲରୁ ବହିଷ୍କାର ଆଦେଶ ଦେଲେ । ସେ ଛାତ୍ର ପରେ କ୍ଷମା ମାଗିବାରୁ ଓ ଭବିଷ୍ୟତରେ ଏପରି ଭୌତିକ କାଣ୍ଡ ନ କରିବାକୁ ପ୍ରତିଶ୍ରୁତି ଦେବାରୁ ତାର ଦୋଷ ମାର୍ଜନା କରାଗଲା ।

## ଶିକ୍ଷାବିତ୍ କେବଳଟୀ :

ଶିକ୍ଷକ ନହୋଇ ଶିକ୍ଷାବିତ୍ ହେବାପାଇଁ ଅନେକ ନେତା ଚେଷ୍ଟା ଚଳାଇ ଥାଆନ୍ତି । ଡକ୍ଟର ତ୍ରିପାଠୀଙ୍କ ଶିକ୍ଷାମତ ହେଲା ଯେ ଶିକ୍ଷକ ନହୋଇ ଶିକ୍ଷାବିତ୍ ହେବା ବିପଦଜନକ । କାରଣ ସେ କହନ୍ତି ଯେ "ଶିକ୍ଷା ପଦ୍ଧତି, ପ୍ରକ୍ରିୟା ଓ ଅଭିଜ୍ଞତାରେ ପାରଦର୍ଶିତା ହେଉଛି ଶିକ୍ଷାବିତ୍ତର ଯୋଗ୍ୟତା" । ଏପରିକି ଅନ୍ୟୂନ ୨୦-୩୦ ବର୍ଷର ଅଭିଜ୍ଞତା ନଥିଲେ ଶିକ୍ଷାବିତ୍ ପଦବାଚ୍ୟ ହେବା ଅଯଥାର୍ଥ । ଥରେ ଜଣେ ଓକିଲ ଉତ୍କଳ ବିଶ୍ୱବିଦ୍ୟାଳୟର ଶିକ୍ଷାପରିଷଦରୁ ସିଣ୍ଡିକେଟକୁ ନିର୍ବାଚିତ ହେବାପାଇଁ ପ୍ରଚେଷ୍ଟା ଚଳାଇଥାଆନ୍ତି । ତାଙ୍କର ପଇସା ବଳ ଓ ସଙ୍ଗଠନ ବଳ ଅଧିକ ଥାଏ । ଶିକ୍ଷା ପରିଷଦରୁ ଶିକ୍ଷାବିତ୍ଙ୍କୁ ନିର୍ବାଚିତ କରିବାର ଯୁକ୍ତି ଡକ୍ଟର ତ୍ରିପାଠୀ ଉପସ୍ଥାପନା କରୁଥାଆନ୍ତି । "ଶିକ୍ଷକ ନହୋଇ ଶିକ୍ଷାବିତ୍ ହେବା" ବାସନାକୁ ପଣ୍ଡ କରାଇବାରେ ତାଙ୍କ ଯୁକ୍ତି ଆଦୃତ ହେଲା । ଉକ୍ତ ଅର୍ଥପରାକ୍ରମୀ ଓକିଲ ପରାସ୍ତ ହୋଇ ଆଜୀବନ ଶତ୍ରୁ ପାଲଟି ଗଲେ । କିନ୍ତୁ ଡ଼କ୍ଟର ତ୍ରିପାଠୀଙ୍କର ଏହି ଶିକ୍ଷାବିତ୍ ପଦର ସଂଜ୍ଞାକୁ ସମସ୍ତେ ଗ୍ରହଣ କରି ଚାଲିଛନ୍ତି ।

## ଆଦର୍ଶର ପ୍ରତିମୂର୍ତ୍ତି :

ଜୀବନରେ ଆଦର୍ଶ ଅବଲମ୍ବନ କରି ଶିକ୍ଷକତା କରିବା ହେଉଛି ଡଃ ତ୍ରିପାଠୀଙ୍କ ଶିକ୍ଷାମତର ଅନ୍ୟ ଏକ ଦିଗ । ଶିକ୍ଷକଙ୍କ ଆଦର୍ଶ ଜୀବନ ଦ୍ୱାରା ଯୁବସମାଜ ପ୍ରଭାବିତ ହେବା ସଙ୍ଗେ ସଙ୍ଗେ ସମାଜର ମୂଲ୍ୟବୋଧ ଦୃଢ଼ ହୋଇ ପାରିବ ବୋଲି ତାଙ୍କର ମତ । ସରଳ ଜୀବନ, ଆବଶ୍ୟକତାର ପରିମାଣ ହ୍ରାସ କରିବା ଏବଂ ଶୁଦ୍ଧନିର୍ମଳ ଆଚରଣ ହେଉଛି ଶିକ୍ଷକର ଆଦର୍ଶ ଏବଂ ଭୂଷଣ । ସ୍ୱଳ୍ପବେତନଧାରୀ ଶିକ୍ଷକର ବିଳାସମୟ ଜୀବନଯାପନ ଏକ ଅଭିସଂପାତ । ଧନିକ ଶ୍ରେଣୀ ଲୋକଙ୍କର ଇନ୍ଦ୍ରିୟତୁଷ୍ଟି ଜୀବନକୁ ପରିହାର ନକରି ସହଗାମୀ ଓ ପ୍ରତିଯୋଗୀ ହେଲେ ସମାଜର ମୂଲ୍ୟବୋଧ ଭୁଷୁଡ଼ିଯିବ । ଏହା ଥିଲା ତାଙ୍କର ଜୀବନର କାହାଣୀ ଓ ଆଦର୍ଶର ମୂଳଭିତ୍ତି । ସମାଜକୁ ଦୃଢ଼କରି ମୂଲ୍ୟବୋଧ

ସାଙ୍ଗରେ ସୁରକ୍ଷିତ କରିବା ପାଇଁ ଆଦର୍ଶ ଜୀବନଯାପନ କରିବା ସମସ୍ତ ଶିକ୍ଷକ ସମାଜର ଗୁରୁ ଦାୟିତ୍ୱ । ଡ଼ଃ ତ୍ରିପାଠୀ ଏହି ଆଦର୍ଶର ଏକ ଜୀବନ୍ତ ନିଖୁଣ ପ୍ରତିମୂର୍ତ୍ତି । ତାଙ୍କର ଜୀବନ ଏକ ଆଦର୍ଶବାଦର ଅମ୍ଳାନ ଚିତ୍ରପଟ । ଛାତ୍ର, ଶିକ୍ଷକ, ସହକର୍ମୀ, ସହପାଠୀ ସମସ୍ତଙ୍କୁ ସେ ତାଙ୍କ ଆଦର୍ଶ ଜୀବନ ଦ୍ୱାରା ପ୍ରଭାବିତ କରି ପାଇଛନ୍ତି । ଭବିଷ୍ୟତ ବଂଶଧରଙ୍କ ପାଇଁ ଏହି ଆଦର୍ଶର ପ୍ରତିମୂର୍ତ୍ତି ଯେ ଏକ ଐତିହାସିକ ବର୍ତ୍ତିଖୁଣ୍ଟ ରୂପେ ଆଲୋକ ପ୍ରଦାନ କରିବ ଏଥିରେ ସନ୍ଦେହ ନାହିଁ ।

ଜୟ ଜଗନ୍ନାଥ !





# କିଛି ସ୍ମୃତି

ଶ୍ରୀ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା

୧୯୫୨-୫୩ ଶୀତଋତୁ । ବଲାଙ୍ଗିର ପୃଥ୍ୱୀରାଜ ହାଇସ୍କୁଲର ଶିକ୍ଷକ ଥାଏଁ । ହଠେ ରାଜେନ୍ଦ୍ର କଲେଜର ଅଧ୍ୟକ୍ଷଙ୍କ ପାଖରୁ ଏକ ନିମନ୍ତ୍ରଣ ପତ୍ର ପାଇଲି । କଲେଜର ଏକ ସାହିତ୍ୟ ସଭାରେ ଅଧ୍ୟକ୍ଷତା କରିବା ଲାଗି ମୋତେ ଅନୁରୋଧ କରାଯାଇଥିଲା । ସଭାରେ ବକ୍ତା ଥିଲେ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା । ମୋତେ ଡାକିଥିଲେ ଅଧ୍ୟକ୍ଷ ଡକ୍ଟର କୁଂଜବିହାରୀ ତ୍ରିପାଠୀ, M. A., B. L., Ph. D. । କୌଣସି କଲେଜର ଦ୍ୱାର ମାଡ଼ି ନ ଥିବା ମୋ ଭଳି ଲୋକ ପାଇଁ ଏ ସବୁର ମନଷ୍ଟିଗତ ପ୍ରଭାବ ବଡ଼ ତୀବ୍ର । ସେହିବର୍ଷ କେତେ ମାସ ପୂର୍ବେ ପ୍ରାଇଭେଟ ପରୀକ୍ଷାର୍ଥୀ ଭାବେ ସଂସ୍କୃତରେ ଏମ୍. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲି —ସେତିକି ମୋର ଯୋଗ୍ୟତା । ଅତ୍ୟନ୍ତ ସଂକୁଚିତ ଭାବେ ସମ୍ମତି ଦେଲି ଏବଂ ବଡ଼ ଉତ୍କଣ୍ଠାର ସହିତ ନିର୍ଦ୍ଦିଷ୍ଟ ସନ୍ଧ୍ୟାରେ ଯାଇ କଲେଜରେ ପହଞ୍ଚିଲି ।

ପ୍ରଥମ ସାକ୍ଷାତ୍ ପାଇଲି ଡକ୍ଟର ତ୍ରିପାଠୀଙ୍କର । ସେତେବେଳେ ଓଡିଶାରେ ପିଏଚ୍. ଡି. କରିଥିବା ଅଧ୍ୟାପକଙ୍କ ସଂଖ୍ୟା ମୁଷ୍ଟିମେୟ— ଓଡ଼ିଆରେ ତ ଥାନ୍ତି ଜମା ଦୁଇଜଣ । ଡକ୍ଟର କରୁଣାକର କର ଆଉ ମୋ ସମକ୍ଷରେ ସ୍ୱୟଂ ଉପସ୍ଥିତ ଡକ୍ଟର ତ୍ରିପାଠୀ । ତା ପରେ, ସେ ଲଣ୍ଡନ ବିଶ୍ୱବିଦ୍ୟାଳୟର ଗବେଷକ ! ତାଙ୍କର ପରିଚ୍ଛଦଗତ ସାରଲ୍ୟ, ଅମାୟିକ ଗମ୍ଭୀର ମୁଖଚ୍ଛବି ସହିତ ଅତ୍ୟନ୍ତ ସଂଭ୍ରମଯୁକ୍ତ ଆମନ୍ତ୍ରଣରେ ମୁଁ ଏକାବେଳକେ ନଇଁ ପଡ଼ୁଥାଏଁ । ଡକ୍ଟର ତ୍ରିପାଠୀଙ୍କ ବିଷୟରେ ମୋର ସେହି ପ୍ରଥମ ଅନୁଭୂତିର ଭାବାବେଗ ଏକ ଚିରନ୍ତନ ସ୍ମୃତି । ସେ ତ ସାର୍; ମୁଁ ମଧ୍ୟ ସ୍ୱତଃ ସ୍ୱୀକାର କରିନେଲି ସେ ମୋର ସାର୍ ।

ସଭା ହେଲା । ମୁଁ ବସିଲି ମଞ୍ଚରେ । ପାଖକେ ଓଙ୍କାର ତ୍ରିପାଠୀ, ଆରପାଖେ ଅଧ୍ୟାପକ ବ୍ରହ୍ମା । ବ୍ରହ୍ମାଙ୍କୁ ବି ସେହିଦିନ ଚିହ୍ନିଲି ପ୍ରଥମ । ଲଳିତ ମଧୁର କଣ୍ଠରେ ତାଙ୍କର ସେ ସଙ୍ଗୀତମୟ ପ୍ରଗଳ୍ଭ ଭାଷଣର ବିଷୟବସ୍ତୁ ଥିଲା ଆମର ପ୍ରାଚୀନ ସାହିତ୍ୟ । ଆଜକୁ ଚାଳିଶି ବର୍ଷ ତଳର କଥା; ଗୌରୀବାବୁଙ୍କ ସେ କାଳ ଭାଷଣର ଉଚ୍ଛ୍ୱାସ ଆଜି ପ୍ରାଣବନ୍ତ ବି ସ୍ମୃତିର ସମ୍ପଦ ହୋଇ ରହିଛି । ସେ ଦିନର ବଲାଙ୍ଗିର କଲେଜ ପ୍ରାଙ୍ଗଣ ଓ ଶ୍ରୋତୃମଣ୍ଡଳୀ ତାଙ୍କ ପାଇଁ ଥିଲା ଏକ ଅଭିନବ କ୍ଷେତ୍ର; କହୁଥାନ୍ତି ସେ ଅନର୍ଗଳଭାବେ । ନିଜ ହାତ ଘଣ୍ଟା ଦେଖି ଦେଖି ସେ ଶେଷ କଲେ କଟକ ଗାଡ଼ି ଛାଡ଼ିବାର ଅଧଘଣ୍ଟା ପୂର୍ବରୁ । ମୁହଁଭଙ୍ଗୀରେ ବିଜୟୀର ଉଲ୍ଲାସ—ମୋତେ ଘଣ୍ଟାଟା ଦେଖାଇ ଶ୍ରେଷ୍ଠ ଅନୁରୋଧଟିଏ କଲେ, ଯେପରି ସେ ବସ୍ ଧରିପାରନ୍ତି । ମୁଁ ଜାଣିଶୁଣି ତାଙ୍କୁ ସବୁ ସମୟ ଦେଇସାରିଥିଲି । ଦୟାକର ନୁହେ, ତାଙ୍କ ଭାଷଣର ଦାବୀ ଓ ମର୍ଯ୍ୟାଦା ଦୃଷ୍ଟିରୁ । ଫଳେ ଦୁ'ପଦରେ ମୋର ଭାଷଣ ସରିଲା, ସଭା ଭାଙ୍ଗିଲା । ଓଙ୍କାର ତ୍ରିପାଠୀ ଟିକଏ କ୍ଷୁଣ୍ଣ ହେଲେ, ବୋଧ କଲି । ତାଙ୍କୁ ଅବସ୍ଥାର ଗୁରୁତ୍ୱ ବୁଝାଇ କ୍ଷମା ମାଗିନେଲି । କହିଲି—"ମୁଁ ତ ସବୁବେଳେ ପାଖରେ ଅଛି, ଆଜିର ସଭାଟା ବ୍ରହ୍ମାଙ୍କର ହୋଇଯିବା ଅବଶ୍ୟ କାମ୍ୟ" । ମୁଣ୍ଡ ହଲାଇ ସମ୍ମତ ହେଲେ ସାର୍ । ଅଳ୍ପ କେତେ ମାସ ପରେ ଓଡ଼ିଆ ବିଭାଗର ମୁଖ୍ୟ ହୋଇ ଓଙ୍କାର ତ୍ରିପାଠୀ ଫେରିଲେ ରେଭେନ୍ସାକୁ ।

୧୯୫୭ରେ ଘରୋଇ ପରୀକ୍ଷାର୍ଥୀ ଭାବେ ଓଡ଼ିଆ ଏମ୍. ଏ. ପରୀକ୍ଷାରେ ପାଶ କଲା ପରେ ୧୯୫୮ ଜାନୁୟାରୀ ତା ୩ ଦିନ ରେଭେନ୍ସାରେ ଯୋଗଦେଲି ଓଡ଼ିଆ ଅଧ୍ୟାପକ ଭାବେ । ସେତେବେଳେ ଜଣ୍ଡି[illegible]ରୋଗରେ ଆକ୍ରାନ୍ତ ହୋଇ ଓଙ୍କାର ତ୍ରିପାଠୀ ଦୀର୍ଘ ଛୁଟିରେ ରହିଲେ—ମୋତେ ପ୍ରଥମ କାମ ହେଲେ ପଞ୍ଚମ ବାର୍ଷିକ ଶ୍ରେଣୀରେ ପିଲାଙ୍କୁ ପଢ଼ାଇବ ପାଲି ପ୍ରାକୃତ । ପରବର୍ତ୍ତୀ ଶିକ୍ଷା ବର୍ଷରେ ପଢ଼ାଇଲି ଅଳଙ୍କାର ଶାସ୍ତ୍ର । ପ୍ରାଚୀନ ସାହିତ୍ୟ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ସହିତ ରାଧାନାଥଙ୍କ ମହାଯାତ୍ରା ଆଉ ଉଷା । ମୋ ଭଳି ସଦ୍ୟକନିଷ୍ଠ ନବାଗନ୍ତୁକ ଅଧ୍ୟାପକ ପକ୍ଷରେ ଏ

ସୌଭାଗ୍ୟର ଗୋଟାଏ କାରଣ ଥିଲା । ବହୁଦିନରୁ ପୁରୁଣା ଅଧ୍ୟାପକ ଭାବେ ରହିଥିବା ପ୍ରାଚୀନ ସାହିତ୍ୟ ଦ୍ରୋଣ ଜୟକୃଷ୍ଣ ମିଶ୍ରଙ୍କ ବଦଳି ହେଲା ୧୯୫୮ ଜୁଲାଇରେ ପୁରୀକୁ । ଠିକ୍ ସେହି ସମୟକୁ ଗୌରୀକୁମାର ବ୍ରହ୍ମା ଗଲେ ସାହିତ୍ୟ ଏକାଡେମୀ, ନଟବର ସାମନ୍ତରାୟ ଗଲେ ଭୁବନେଶ୍ୱର, ଗୋପାଳଚନ୍ଦ୍ର ମିଶ୍ର ଗଲେ ଅନୁଗୁଳ । ନୂଆ ଆସିଲେ ଚିନ୍ତାମଣି ବେହେରା, ଶ୍ରୀନିବାସ ମିଶ୍ର, କୁଳମଣି ମହାପାତ୍ର । ପି. ଜି. କ୍ଲାସ ଖୋଲି ପୁରୁଣା ସିନିଅର ଅଧ୍ୟାପକ ନେବେ ଏ ନିୟମ ବଦଳିଗଲା । ସଂସ୍କୃତ ଆଉ ଅଳଂକାର ଶାସ୍ତ୍ର ପାଇଁ ତ ମୋର ଥିଲା ସ୍ୱତନ୍ତ୍ର ଯୋଗ୍ୟତା, କିନ୍ତୁ ଭଞ୍ଜ, ରାଧାନାଥ ବି ମୋ ଭାଗରେ ପଡିଗଲେ ତାହାହିଁ ଭାଗ୍ୟ । କିନ୍ତୁ ଏହା ଅପେକ୍ଷା ଅଧିକ ଗୁରୁତ୍ୱ ମୋତେ ଦେଲେ ସାର୍ ତାଙ୍କ ଅଫିସ କାମରେ । ମୋ ହାତ ଅକ୍ଷର ସହିତ ମୋର ଅଫିସ ସଂକ୍ରାନ୍ତ ଅଭିଜ୍ଞତା ଡିପାର୍ଟମେଣ୍ଟ କାମରେ ଲାଗିଲା । ପ୍ରାୟ ପ୍ରତିଦିନ ୩ଟା ବେଳକୁ ସାର୍ ଖୋଜନ୍ତି ମୋତେ ଆଉ ଷ୍ଟାଫ୍ କମନ୍‌ରୁମ୍‌ର ସହାୟକ କଣ୍ଡେଇଙ୍କୁ । ପିଇବା ପାଣି ଓ ଚା' ପରେ ଦୈନନ୍ଦିନ ଚିଠି ଖଣ୍ଡେ ଦୁ'ଖଣ୍ଡ ଲେଖାହୁଏ ।

ଆପାତତଃ ଗମ୍ଭୀର ଏବଂ ଉଦାସୀନ ଡକ୍ଟର ତ୍ରିପାଠୀଙ୍କୁ ଚିହ୍ନିବା ଲାଗି ତାଙ୍କ ନିକଟକୁ ଯିବାକୁ ହୁଏ । ମୋଠାରୁ ସେ ବୟସରେ ନଅବର୍ଷ ବଡ଼; କିନ୍ତୁ ବଡ଼ ସରଳ ମନରେ ଆପେ ଆପେ ମାନିଯାନ୍ତି ଯେ ମୁଁ ତାଙ୍କଠୁ ବେଶୀ ଚିହ୍ନିଥିଲି ସଂସାରକୁ । ଭାଷାତତ୍ତ୍ୱ ସମ୍ପର୍କିତ ନାନାକଥା ହିଁ ତାଙ୍କ ଚିନ୍ତାର କେନ୍ଦ୍ରରେ ଥାଏ; ଖଣ୍ଡେ ଟିପାଖାତାରେ ଯେତେବେଳେ ଯାହା ଶୁଣନ୍ତି ପାଆନ୍ତି ଲେଖି ରଖନ୍ତି । କୌଣସି କାମ ନଥିବା ଦିନ ଆମ ମଧ୍ୟରେ ଚାଲେ ଘରକଥା, ପିଲାଟିଙ୍କ ସଂଖ୍ୟା, ବୟସ, ପଢ଼ାପଢ଼ି ଇତ୍ୟାଦି ସଂସାର କଥା । କେବେ କେବେ ମୁଁ ତାଙ୍କ ପ୍ରଫେସରପଡ଼ା ଘରକୁ ଯାଏଁ, ସାର୍ ଅତି ଆଗ୍ରହରେ ମୋ କଥା ଶୁଣନ୍ତି—ବେଶୀ ଭାଗ ପାଠ ସମ୍ପର୍କିତ । ସେ ବି କେତେଥର ମୁଁ ମଙ୍ଗଳାବାଗରେ ରହୁଥିବା ଭଡ଼ାଘରକୁ ଆସିଛନ୍ତି । ବଡ଼ଝିଅ ତ ରେଭେନ୍‌ସା କଲେଜରେ ପଢ଼ୁଥିଲା; ସାନ ଝିଅମାନେ ସେତେବେଳକୁ ଚିହ୍ନିଥିଲେ ସାର୍‌ଙ୍କୁ । କ୍ରମେ ମୁଁ ଅନୁଭବ କରୁଥିଲି ଯେ ମୁଁ ସାର୍‌ଙ୍କ ବିଶ୍ୱାସଭାଜନ ହେଉଥିଲି ।

ପ୍ରଥମ ବର୍ଷ ଶେଷରେ ସାର୍ ମୋର କ୍ଲାସ ଦେଖିଲେ । ତା ପୂର୍ବରୁ ମୋତେ ଗୋଟାଏ ସପ୍ତାହର ପାଠଦାନ ନିର୍ଦ୍ଧେଶ ଦେବାକୁ ହେଲା । ଗୋଟାଏ ନିୟମିତ ପ୍ରାକ୍ଟିକାଲ୍ ପରୀକ୍ଷା । ଜୀବନରେ କଲେଜରେ ପଢ଼ିନାହିଁ, କଲେଜ ସାର୍ ଦେଖିନାହିଁ; ଅଠର ବର୍ଷର ସ୍କୁଲ ଶିକ୍ଷକତା ପରେ ଆସିଥାଏଁ ରେଭେନ୍ସାକୁ । ମୁଁ ଖାଲି ମନଲଗାଇ ଟ୍ରେନିଂ କଲେଜ ଢଙ୍ଗର ଗୋଟାଏ ସାପ୍ତାହିକ ପ୍ଲାନ ଦେଲି ସାର୍‌ଙ୍କୁ । ଦେଖି ଖୁସି ହୋଇଗଲି ଯେ ସେଇଟା ସାର୍‌ଙ୍କ ମନକୁ ପାଇଗଲା । ମନର ଦମ୍ଭ ଆସିଲା । ମୋ ସୂଚନା ଅନୁଯାୟୀ ସାର୍ ନିଃଶବ୍ଦରେ ମୋ କ୍ଲାସ୍‌ର ଶେଷ ବେଞ୍ଚରେ ବସିଗଲେ । ବସିଲେ ସେ ପ୍ରାୟ ୪୫ ମିନିଟ । ଘଣ୍ଟା ବାଜିଲା, ମୁଁ ବାହାରିବା ପୂର୍ବରୁ ସେ କ୍ଲାସ ଛାଡିଲେ । ଭଲମନ୍ଦ ମୋତେ କିଛି କହୁନଥାନ୍ତି । ୪।୫ ଦିନ ପରେ ମୁଁ ପଚାରିବାରେ ସାମାନ୍ୟ ହସି କହିଲେ, "ଘଣ୍ଟାଟା ଆଉ ଟିକଏ ବିଳମ୍ବରେ ପଡ଼ିଥାନ୍ତା କି !" ମୁଁ ଦେଖିଲି ବେଳେ ବେଳେ ଡକ୍ଟର ତ୍ରିପାଠୀ ବି ଧ୍ୱନିବାକ୍ୟ କହନ୍ତି । ତା ପରେ ଆମ ସେ ସମୟର ସହକର୍ମୀମାନଙ୍କୁ ସାର୍ ମୋର ସେ ପ୍ଲାନ୍ ଦେଖାଇ ତାରିଫ୍ କଲେ । କାହାକୁ କଣ କହିବ ସେ କଥା ବୁଝିବାଭଳି ଚତୁରତା ତାଙ୍କୁ ଜଣା ନଥିଲା । ଆପଣା ଧାରଣା ପ୍ରତି ବିଶ୍ୱସ୍ତ ରହିବା ତାଙ୍କ ସରଳ ପ୍ରକୃତିର ବୈଶିଷ୍ଟ୍ୟ । ମୋର ସେ କ୍ଲାସ୍ ଦେଖା ପରେ ମୋ ବିଷୟରେ ତାଙ୍କ ଧାରଣା ଏକ ନିଶ୍ଚିତ ରୂପ ନେଇଥିଲା ଏବଂ ମୋ ପ୍ରତି ଆନ୍ତରିକତାରେ ତାହା ପଦେ ପଦେ ପ୍ରକାଶ ପାଇଥିଲା । ତାଙ୍କ ତତ୍ତ୍ୱାବଧାନରେ ଗବେଷଣା କରିବା ଉଦ୍ଦେଶ୍ୟରେ ବିଶ୍ୱବିଦ୍ୟାଳୟକୁ ଆବେଦନପତ୍ର ଦେଇଥିଲି । ନିୟମାନୁଯାୟୀ ମୋ ଭଳି ଆବେଦନ-କାରୀଙ୍କ ସଂଖ୍ୟାଧିକ୍ୟ ଯୋଗୁଁ ମୋ ଭଳି ଜଣେ ଦି'ଜଣଙ୍କୁ ଓଢ଼ର ଫେରିବାକୁ ହେଲା ।

ବଦଳି ହେଲି । ରେଭେନ୍ସା କଲେଜ ଛାଡି ଆସି ଯୋଗଦେଲି ସମ୍ବଲପୁର ଗଙ୍ଗାଧର ମେହେର କଲେଜରେ । ପୁଣି ଡକ୍ଟର ତ୍ରିପାଠୀଙ୍କ ସହକର୍ମୀ ହେଲି ସେଠି । ଚାକିରିର ଶେଷ ଚଉଦ ମାସ ସେ ହେଲେ ଏ କଲେଜରେ ପ୍ରିନ୍ସିପାଲ । ସମ୍ବଲପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇ

ସରିଥାଏ - ମେହେର କଲେଜ ଏ ବିଶ୍ୱବିଦ୍ୟାଳୟର ପ୍ରମୁଖ ବିଦ୍ୟାପୀଠ । ତାଙ୍କର ଏ ଚଉଦମାସ ପ୍ରଶାସନିକ ଦାୟିତ୍ୱ ନିର୍ବାହ କ୍ଷେତ୍ରରେ ସାର୍ ସବୁ ବରିଷ୍ଠ ଅଧ୍ୟାପକଙ୍କ ସହାୟତା ନେଇ କାର୍ଯ୍ୟାରମ୍ଭ କରି କୃତିତ୍ୱ ଅର୍ଜନ କରିଥିଲେ । ସାର୍‌ଙ୍କର ଗୋଟିଏ ବଡ଼ ଯୋଗ୍ୟତା ଥିଲା, ଯେ ସେ ଅଧିକାଂଶ ଅଧ୍ୟାପକଙ୍କ ଓଡ଼ିଆ ସାର୍ ଥିଲେ । ତାଙ୍କପରି ମିତବାକ୍, ସତ୍ୟପ୍ରିୟ ସାର୍‌ଙ୍କୁ ମିଳିଲା ସମସ୍ତଙ୍କ ଅକୁଣ୍ଠ ସହଯୋଗ । ଛାତ୍ରଛାତ୍ରୀମାନଙ୍କ ପ୍ରତି ସାର୍‌ଙ୍କ ବ୍ୟବହାରରେ ଥିଲା ଏକ ନିୟମାନୁବର୍ତ୍ତୀ କଠୋରତା ସହିତ ଉଦାର ମାନବିକତାର ମଧୁର ସମନ୍ୱୟ । ବିଶୃଙ୍ଖଳା ବିଶେଷତଃ ଅଧ୍ୟାପକଙ୍କ ମର୍ଯ୍ୟାଦା ହାନି କଲାଭଳି କୌଣସି ଘଟଣାରେ ସଂପୃକ୍ତ ଛାତ୍ର-ଛାତ୍ର ସାର୍ ଅତ୍ୟନ୍ତ କଠୋର ହେଉଥିଲେ । ମନେ ଅଛି, ଏହିଭଳି ଅବସ୍ଥାରେ ଜଣେ ନେତୃସ୍ଥାନୀୟ ଛାତ୍ରଙ୍କୁ ସାର୍ କେବଳ କ୍ଷମାଭିକ୍ଷା କରିବାକୁ ବାଧ୍ୟ କଲେ ନାହିଁ । ଅଧିକନ୍ତୁ ଲେଖାଇ ନେଲେ ଯେ ଭବିଷ୍ୟତରେ ଏଭଳି କଲେ ଦଣ୍ଡ ଭୋଗିବ । ତାଙ୍କର ଏ ଧରଣର ଦୃଢ଼ ଝନୋଠି ସିଦ୍ଧାନ୍ତ ଏବଂ ନିରପେକ୍ଷ ବ୍ୟବସ୍ଥା ତାଙ୍କୁ ଦେଇଥିଲା ଏକ ନୀରବଗମ୍ଭୀର ଶକ୍ତି ଯାହା ପ୍ରଭାବରେ ଏ ଚଉଦଟି ମାସରେ ଘଟି ନଥିଲା କୌଣସି ପ୍ରକାର ଛାତ୍ର ଅଶାନ୍ତି ।

ସମ୍ବଲପୁର ରହଣିର ଉପଯୋଗର ଫଳ ସ୍ୱରୂପ ପଶ୍ଚିମାଞ୍ଚଳୀରେ ଓଡ଼ିଆ ଅଭିଧାନ ପ୍ରକାଶ ପାଇଲା । କିନ୍ତୁ କଲେଜର ଅଧ୍ୟକ୍ଷ ଭାବେ ଡକ୍ଟର ତ୍ରିପାଠୀ ବିଭିନ୍ନ ସାହିତ୍ୟ ସଭାରେ ଭାଷଣ ଦେଲାବେଳେ ଓଡ଼ିଆ ସାହିତ୍ୟରେ ତାଙ୍କ ପ୍ରବେଶ ଅନେକଙ୍କ ପାଇଁ ବିସ୍ମୟକର ହୋଇଥିଲା । ଭାଷାତତ୍ତ୍ୱ ହୋଇ ଯାଇଥିଲା ସାର୍‌ଙ୍କ ପରିଚୟ; ତାହାର ଅନ୍ତରାଳରେ ଭଞ୍ଜ, ରାଧାନାଥ, ଗଙ୍ଗାଧର, ଫକୀରମୋହନ ସାହିତ୍ୟର ମର୍ମଜ୍ଞ ସମାଲୋଚକ ଭାବେ ତାଙ୍କ କୃତିତ୍ୱ ପ୍ରାୟ ଅଜ୍ଞାତ ଥିଲା । ତା ଛଡ଼ା ଗୋଟାଏ ନିର୍ଦ୍ଦିଷ୍ଟ ନିରପେକ୍ଷ ନୀତିରେ ଦୃଢ଼ ରହିବା ଦ୍ୱାରା ସେ ପ୍ରଶାସନିକ ସଫଳତା ମଧ୍ୟ ଲାଭ କରିଥିଲେ । ତାଙ୍କୁ ଯେ କେତେ ଜଣ ଅଧ୍ୟାପକ ବିଶେଷ ଭାବେ ସହଯୋଗ ଦେଇଥିଲେ ତାଙ୍କ ମଧ୍ୟରେ ସାର୍ ମୋତେ ମଧ୍ୟ ସ୍ଥାନ ଦେଇଥିଲେ । ଏହାର କାରଣ ସ୍ପଷ୍ଟ । ତା ଛଡ଼ା ଏହି ସମୟରେ

ବିଶ୍ୱବିଦ୍ୟାଳୟ ସ୍ତରରେ ଏବଂ ଅନ୍ୟାନ୍ୟ ଭାଷା ସାହିତ୍ୟ ପ୍ରସଙ୍ଗରେ ମୁଁ ତାଙ୍କର ବିଶ୍ୱସ୍ତ ସହକର୍ମୀ ହେବାର ଗୌରବ ଲାଭ କରିଥିଲି । ଶେଷରେ ପାରିବାରିକ ସ୍ତରରେ ବନ୍ଧୁତା ମଧ୍ୟ ଆସିଲା । ଏ ପରିଚୟର ନିବିଡ଼ତା ମଧ୍ୟରେ ଡକ୍ଟର ତ୍ରିପାଠୀଙ୍କ ସାରଲ୍ୟ ଜ୍ଞାନନିଷ୍ଠା ଏବଂ ଗୁଣଗ୍ରାହକତାର ବହୁ ଶ୍ରେଷ୍ଠବଡ଼ ଦୃଷ୍ଟାନ୍ତ ରହିଛି ସ୍ମୃତିର ସମ୍ପଦ ହୋଇ ।

ଓଡ଼ିଆ ଭାଷାତତ୍ତ୍ୱ କ୍ଷେତ୍ରରେ ସେ ଆମ ସମସାମୟିକ କାଳର ଅନ୍ୟତମ ଭାରତ ବିଖ୍ୟାତ ମନୀଷୀ । ସ୍ୱୟଂ ଏ ଭାଷାର ସ୍ୱରୂପ ନିର୍ଦ୍ଧାରଣ କରିଲୁ ନିରନ୍ତର ଉଦ୍ୟମ କରିବା ସଙ୍ଗେ ସଙ୍ଗେ ତାଙ୍କର କେତେଜଣ ଧୀମାନ୍ ଶିଷ୍ୟଙ୍କୁ ଏ ଦିଗରେ ଦୀକ୍ଷା ଓ ଦିଗ୍‌ଦର୍ଶନ ଦେଇ ପ୍ରବୋଚିତ କରିବା ଦ୍ୱାରା ଓଡ଼ିଆ ଭାଷାର ବୈଜ୍ଞାନିକ ଆକଳନ ଦିଗରେ ସାର୍ ଯେଉଁ ସରଣୀ ପ୍ରତିଷ୍ଠା କରିଛନ୍ତି ତାହା ତାଙ୍କ ଚିର ଅମଳିନ କୀର୍ତ୍ତି । ଜ୍ଞାନର ଶେଷ ନାହିଁ; ତେଣୁ ଜ୍ଞାନ ପାଇଁ ଅବସରର ସମ୍ଭାବନା ମଧ୍ୟ ଅବାନ୍ତର । ସେମାନଙ୍କ ପାଖରୁ ପ୍ରାପ୍ତିର ଆଶା ବି ଅନନ୍ତ । ଈଶ୍ୱର କରନ୍ତୁ ତାଙ୍କ ପାଖରୁ ଏଭଳି ଆଲୋକ ଓ ଦିଗ୍‌ଦର୍ଶନ ମିଳୁଥାଉ ।





# ଶ୍ରୀଗୁରୁ ; କିଛି ସ୍ମୃତି କିଛି ଅଭିଜ୍ଞତା

ଡ. ପ୍ରହ୍ଲାଦଚରଣ ମହାନ୍ତି

ଗ୍ରାମ୍ୟାଞ୍ଚଳ ପରିବେଶରେ ଲାଳିତ-ପାଳିତ-ଆଦ୍ୟ ଶିକ୍ଷାପ୍ରାପ୍ତ ଯେ କୌଣସି ଛାତ୍ର ବଡ଼ ସହରର ଉନ୍ନତ ପ୍ରାଚୀନ ମହାବିଦ୍ୟାଳୟର ଜଣେ ପ୍ରତିଥିଧର ପ୍ରଫେସରଙ୍କୁ ଦର୍ଶନ କଲେ ତା' ମନରେ ଯେଉଁ ଉତ୍ସୁକତା, ଆବେଗ, ଆଲୋଡ଼ନ, ଆଶ୍ଚର୍ଯ୍ୟଭାବ ଜନ୍ମେ ତାହା ଭାଷାରେ ପ୍ରକାଶ କରିବା ସମ୍ଭବ ନୁହେଁ । ଏହିପରି ଏକ ଅଲୌକିକ ଅନୁଭୂତି ଏହି ଲେଖକର ଜୀବନରେ ଘଟିଥିଲା ୧୯୫୭ ମସିହାରେ ରେଭେନ୍ସା କଲେଜ ସ୍ନାତକୋତ୍ତର ଓଡ଼ିଆ ବିଭାଗର ପଞ୍ଚମ ବାର୍ଷିକ ଶ୍ରେଣୀରେ ସେ ଯେତେବେଳେ ପ୍ରଥମେ ପ୍ରଫେସର ଡ଼: କୁଞ୍ଜବିହାରୀ ତ୍ରିପାଠୀଙ୍କୁ ଦର୍ଶନ କରିଥିଲା ।

ଘଣ୍ଟାଧ୍ୱନି ପରେ ଆମେ ସମସ୍ତେ ପ୍ରତୀକ୍ଷାରେ ଥାଉଁ । ବିଭାଗୀୟ ମୁଖ୍ୟ ପ୍ରଫେସର ଡ଼: କୁଞ୍ଜବିହାରୀ ତ୍ରିପାଠୀ ଆସିବେ । ଭାଷାତତ୍ତ୍ୱ ପାଠ୍ୟ ବିଷୟ ଥାଏ । ପାଠ୍ୟ ବିଷୟ ଅପେକ୍ଷା ଏମ୍. ଏ. ଶ୍ରେଣୀରେ ପାଠ୍ୟଦାନର ପଦ୍ଧତି ଓ ଅଧ୍ୟାପକଙ୍କର ପରିଚିତି ଜାଣିବା ପାଇଁ ମୋର ଚିନ୍ତା ପରିବେଶର ଏକ ଅହେତୁକ କୌତୂହଳ ଓ ଉନ୍ମାଦନା ସୃଷ୍ଟି କରୁଥାଏ । ମୋ ଗାଁ ପ୍ରାଥମିକ ବିଦ୍ୟାଳୟର ସଦ୍ୟ ଲିପାପୋଛା ହୋଇଥିବା ମାଟି ଚଟାଣ ଉପରେ ତାଳପତ୍ର-ମସିଣା ଉପରେ ବସିରହି ଡି. ଆଇ.ଙ୍କ ଆଗମନକୁ ଗମ୍ଭୀରଭାବେ ପ୍ରତୀକ୍ଷା କରିବାରେ ଯେଉଁ ଅନୁଭୂତି ମୋ ସ୍ମୃତିପଟରେ ଲୁକ୍କାୟିତ ବା ସୁପ୍ତ ଅବସ୍ଥାରେ ଥିଲା ସେଦିନ ତାହା ଜୀବନ୍ୟାସ ପାଇବା ପରି ମନେ ହେଲା । ଉତ୍ସାହ, ଉଦ୍ଦୀପନା, ଆବେଗ ଇତ୍ୟାଦି ଚିତ୍ତବୃତ୍ତିଗୁଡ଼ିକ ବୟସର ମାତ୍ରା ଉପରେ ନିର୍ଭରଶୀଳ ହେଲେ ମଧ୍ୟ ଯେ କୌଣସି ବୟସରେ

ଅନୁଭବ ଉପାଦାନ ସମାନ । ପ୍ରାୟ ପନ୍ଦର ବର୍ଷ ତଳର ଶୈଶବାବସ୍ଥାର ସେହି ଅଭୁଲା ଅନୁଭୂତି ଏପରି ପରିବେଶରେ ପୁନର୍ଜୀବନ ଲାଭ କରିବା ଏକାନ୍ତ ସ୍ୱାଭାବିକ ।

ଆମ୍ଭମାନଙ୍କ ଆବେଗ, ଆଶଙ୍କା ଓ ଉତ୍କଣ୍ଠାର ଅବସାନ ଘଟାଇ ଧୀର ପାଦରେ ଶ୍ରେଣୀ ପ୍ରକୋଷ୍ଠରେ ପ୍ରବେଶ କଲେ ଡ଼ଃ ତ୍ରିପାଠୀ । ଅନୁନାସିକ ସ୍ୱର ସମ୍ବଳିତ ଗଳାରେ "ହୁଁ ବସ ବସ" ବୋଲି କହି କହି ଚେୟାର ପାଖକୁ ଚାଲିଗଲେ । ଭଙ୍ଗୀରେ ଆତ୍ମବିଜ୍ଞାପନର ଅହଂକାର ନାହିଁ କିମ୍ବା ନୂତନର ସନ୍ଧାନ ପାଇଁ ବ୍ୟଗ୍ରତା ନାହିଁ । ତାଙ୍କ ପରିଧାନ ଥିଲା ଆଣ୍ଠୁର ସାମାନ୍ୟ ତଳକୁ ପ୍ରଲମ୍ବିତ ହୋଇଥିବା ଧୋତି ଓ ଜ୍ୟାକେଟ ପରି ଏକ ହାପ୍ ସାର୍ଟ । ଦକ୍ଷିଣ ହସ୍ତରେ ଟିଣ ସୁଟ୍ କେଶ୍ । ଟେବୁଲ ଉପରେ ସୁଟକେଶ୍ ଟି ଥୋଇ ସେ ରୋଲକଲ କଲେ । ମାତ୍ର କେତେ ମିନଟ୍ ମଧ୍ୟରେ ରୋଲକଲ ସରିଗଲା । କାରଣ ଆମେ ସାତଜଣ ପୁଅ ଓ ଜଣେ ଝିଅ ସମେତ ପଞ୍ଚମ ବର୍ଷରେ ଆଠଜଣ ପିଲା ଅଧ୍ୟୟନ କରୁଥିଲୁଁ । ସେ ସୁଟ୍ କେଶ୍ ଖୋଲି ସେଥିରୁ ପୁସ୍ତକ ବାହାର କଲେ । ପ୍ରଥମ ଶ୍ରେଣୀରେ ଗୁରୁ ଓ ଛାତ୍ର ପରସ୍ପରକୁ ଜାଣିବାର ଔପଚାରିକ ଶୃଙ୍ଖଳା ପ୍ରତି ତାଙ୍କର ଆଦୌ ଆସକ୍ତି ନଥିଲା । ସମ୍ଭବତଃ ତାଙ୍କ ମନରେ ପ୍ରାଚୀନ ଗୁରୁଶିକ୍ଷା ସମ୍ପର୍କର ଆଦର୍ଶ କାର୍ଯ୍ୟ କରୁଥିଲା । ଅଧ୍ୟାପନା ସମୟ ବ୍ୟତୀତର ନାମ, ଠିକଣା ପଚାରି ପ୍ରତ୍ୟକ୍ଷ ଭାବରେ ପରସ୍ପରକୁ ଚିହ୍ନିବା ଅପେକ୍ଷା ସମୟାନୁକ୍ରମେ ସମ୍ପର୍କ ମାଧ୍ୟମରେ ଗୁରୁ-ଶିଷ୍ୟ ପରସ୍ପରକୁ ଚିହ୍ନିବା ଶ୍ରେୟସ୍କର । ବୃକ୍ଷଲତା, ନଦୀ, ପର୍ବତ ନିକଟରେ ନିଜର ପରିଚୟ ଦେବାପାଇଁ ସୂର୍ଯ୍ୟ ଡିଣ୍ଡିମ ବଜାଇ ନଥାଏ । ସୂର୍ଯ୍ୟ ସ୍ୱତଃ ଦେଦୀପ୍ୟମାନ ।

ଛାତ୍ରଙ୍କ ପ୍ରତି ସମଦୃଷ୍ଟି ପ୍ରକାଶ ପ୍ରଫେସର ତ୍ରିପାଠୀଙ୍କ ଏକ ଅନବଦ୍ୟ ଗୁଣ । ଗୁରୁଙ୍କର କୃପା, ସୁଦୃଷ୍ଟି, ଆଶୀର୍ବାଦ, ସ୍ନେହାଦର ପାଇବା ପାଇଁ ସବୁ ଛାତ୍ର ବ୍ୟଗ୍ର ହୋଇ ଉଠନ୍ତି । ଶ୍ରେଣୀରେ ଉତ୍ତମ ପ୍ରଶ୍ନ ପଚାରି ଯଥାର୍ଥ ଉତ୍ତର ଦେଇ ପରୀକ୍ଷାରେ ଉତ୍ତମ ନମ୍ବର ହାସଲ

କରି ଛାତ୍ରମାନେ ଗୁରୁଙ୍କର ଶ୍ରଦ୍ଧାଭାଜନ ହେବାକୁ ଉଦ୍ୟମ କରନ୍ତି । ଏପରି ପିଲାମାନେ ଯେ ଅଧ୍ୟାପକ ଅଧ୍ୟାପିକାଙ୍କ ପ୍ରତି ଉତ୍ତମ ଆଚରଣ ପ୍ରଦର୍ଶନ କରିଥାନ୍ତି ତାହା କହିବା ବାହୁଲ୍ୟ ମାତ୍ର । ଏମ୍. ଏ. ଶ୍ରେଣୀରେ ଆମ ଆଠଜଣ ପିଲାଙ୍କ ମଧ୍ୟରେ ପ୍ରଫେସର ତ୍ରିପାଠୀଙ୍କର ନିକଟବର୍ତ୍ତୀ ହେବା ପାଇଁ ପ୍ରତିଯୋଗିତା ନଥିଲେ ମଧ୍ୟ ତାଙ୍କର କିଏ ପ୍ରିୟ ଛାତ୍ର ତାହା ଜାଣିବା ପାଇଁ ପ୍ରତ୍ୟେକଙ୍କ ମନରେ ପ୍ରବଳ ଉତ୍ସୁକତା ଥିଲା । ମାତ୍ର ରେଭେନ୍ସା କଲେଜରୁ ଏମ୍. ଏ. ପାଶ୍ କରି ଆସିବା ପର୍ଯ୍ୟନ୍ତ ଆମେ ଜାଣିପାରି ନଥିଲୁ କିଏ ତାଙ୍କର ଅନ୍ତରଙ୍ଗ ଛାତ୍ର । ଛାତ୍ରଙ୍କ ପ୍ରତି ଗୁରୁଙ୍କର ଆପାତ ନିର୍ଲିପ୍ତତା ସେମାନଙ୍କ ବୌଦ୍ଧିକ ବିକାଶରେ କିପରି ସହାୟକ ହୁଏ, ତାହା ପ୍ରଫେସର ତ୍ରିପାଠୀଙ୍କ ପରି ଗୁରୁଙ୍କ ସଂସ୍ପର୍ଶରେ ନ ଆସିଲେ ଜାଣିହେବ ନାହିଁ ।

ପ୍ରଫେସର ତ୍ରିପାଠୀଙ୍କ ଛାତ୍ରବତ୍ସଳତା ବିଜ୍ଞାପିତ ହୁଏ ନାହିଁ । ଛାତ୍ରଙ୍କ ପ୍ରତି ମମତା ଅନ୍ତଃସଲିଳା ଫଲ୍‌ଗୁ ପରି ଅନ୍ତରରେ ପ୍ରବାହିତ ହେଉଥାଏ । ମୋ ଛାତ୍ର ଜୀବନର ବହୁବର୍ଷ ପରେ ତାଙ୍କର ଏହି ଦେବୋପମ ଗୁଣର ପରିଚୟ ପାଇଲି । ମୁଁ ଉତ୍ତର ଓଡ଼ିଶା ସାହିତ୍ୟ ସଂସ୍କୃତି ସମ୍ମେଳନର ସଭାପତି ଥାଇ ଅନୁଷ୍ଠାନର ମୁଖପତ୍ର 'ଉତ୍ତର ଓଡ଼ିଶା' ପାଇଁ ପତ୍ର ମାଧ୍ୟମରେ ମୋ ପରିଚୟ ଦେଇ ଗୋଟିଏ ପ୍ରବନ୍ଧ ପଠାଇବା ନିମନ୍ତେ ଅନୁରୋଧ କରନ୍ତେ ସେ ମୋ ପତ୍ରର ଉତ୍ତର ଛଳରେ ଗୋଟିଏ ପ୍ରବନ୍ଧ ପଠାଇଥିଲେ । ମୁଁ ତାଙ୍କ ତଥ୍ୟ ସମ୍ବଳିତ ପତ୍ରଟି ମୁଖପତ୍ରରେ ଅବିକଳ ଭାବେ ତାହା ସ୍ଥାନିତ କରିଥିଲି ।

ଏହି ନିକଟ ଅତୀତର କଥା । ବ୍ୟାସକବି ଫକୀରମୋହନ ସେନାପତିଙ୍କ ୧୫୦ତମ ଜୟନ୍ତୀ କମିଟୀ ଆନୁକୂଲ୍ୟରେ ପ୍ରକାଶିତ ହେବାକୁ ଥିବା ସ୍ମରଣିକା ନିମନ୍ତେ ପତ୍ରିକାର ସମ୍ପାଦକଭାବେ ଗୋଟିଏ ପ୍ରବନ୍ଧ ପାଇଁ ଅତି ସନ୍ତର୍ପଣରେ ତାଙ୍କୁ ଗୋଟିଏ ପତ୍ର ଲେଖିଥିଲି । ପରିଣତ ବୟସରେ ପ୍ରବନ୍ଧ ଲେଖିବା କଷ୍ଟସାଧ୍ୟ ବିଷୟ ଜାଣିଥିଲେ ସୁଦ୍ଧା ତାଙ୍କପରି ଭାରତ ବିଖ୍ୟାତ ମହାନ୍ ପଣ୍ଡିତ ଓ ଗବେଷକଙ୍କ ଲେଖନୀ ନିଃସୃତ ଫକୀରମୋହନ

ସମ୍ବନ୍ଧୀୟ ଯେ କୌଣସି ପ୍ରବନ୍ଧ ଆମ ସ୍ମରଣିକାର ମହତ୍ତ୍ୱ ଯେ ବୃଦ୍ଧି କରିବ ଏହି ଭାବନାରେ ବଶବର୍ତ୍ତୀ ହୋଇ ଅନୁରୋଧ ପତ୍ର ପଠାଇଲି । ମୋର ଏକମାତ୍ର ଭରସା ଥିଲା ମୁଁ ତାଙ୍କର ଜଣେ ପ୍ରାକ୍ତନ ଛାତ୍ର । ୧୯୫୭-୫୯ ମସିହାରେ ରେଭେନ୍‌ସା କଲେଜରେ ଓଡ଼ିଆ ଏମ୍. ଏ. ମୁଁ ତାଙ୍କର ଛାତ୍ରଥିବା ବିଷୟ ଉଲ୍ଲେଖ କରି ଏପରି ଅନୁରୋଧ ଜଣାଇଥିଲି । ଶାରୀରିକ ଅସୁସ୍ଥତା ଓ ପାରିବାରିକ ଜଞ୍ଜାଳ ପ୍ରତି ଭ୍ରୂକ୍ଷେପ ନକରି ସେ ଯେଉଁ ପ୍ରବନ୍ଧଟି ପଠାଇଥିଲେ ତାହା ତାଙ୍କର ଏହି ପୁରାତନ ଛାତ୍ର ପ୍ରତି ଅଗାଧ ସ୍ନେହ ଓ ମମତାର ପ୍ରତୀକ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । "ଫକୀରମୋହନଙ୍କ ଗଳ୍ପସ୍ୱଳ୍ପରେ ଦେଶଜ ଶବ୍ଦ" ଶୀର୍ଷକ ପ୍ରବନ୍ଧଟି ତାଙ୍କ ଗଭୀର ପାଣ୍ଡିତ୍ୟ, ବହୁଶାସ୍ତ୍ରଦର୍ଶିତା ଓ ଅନୁସନ୍ଧିତ୍ସୁ ମନର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ।

ସାଧନାର ସେ ଜଣେ ନିରଳସ ବ୍ୟକ୍ତିତ୍ୱ । ଡ଼ଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପରି ଜଣେ ଆଦର୍ଶ ଗୁରୁଙ୍କର ସେ ଜଣେ ଯୋଗ୍ୟତମ ଶିଷ୍ୟ । ଓଡ଼ିଆ ଭାଷା, ଲିପି, ଶିଳାଲେଖ ଓ ସାହିତ୍ୟ ଉପରେ ସେ ଯେଉଁ ପୁସ୍ତକ ଓ ସନ୍ଦର୍ଭମାନ ରଚନା କରି ଯାଇଛନ୍ତି ତାହା ସାରସ୍ୱତ ଭଣ୍ଡାରରେ ଗୋଟିଏ ଗୋଟିଏ ଉଜ୍ଜ୍ୱଳ ରତ୍ନ । ଡ଼ଃ ଆର୍ତ୍ତବଲ୍ଲଭ ମହାନ୍ତି ଗବେଷଣାର ଯେଉଁ ନବ ଦିଗଦିଗନ୍ତ ଉନ୍ମୋଚନ କରି ଯାଇଥିଲେ ତାକୁ ସମ୍ପ୍ରସାରଣ କରିବାରେ ପ୍ରଫେସର ଡ଼କ୍ଟର କୁଞ୍ଜବିହାରୀ ତ୍ରିପାଠୀଙ୍କ ଅବଦାନ ଅବିସ୍ମରଣୀୟ । ସେପରି ଋଷିପ୍ରତିମ, ଦିବ୍ୟଦ୍ରଷ୍ଟା, ସ୍ଥିତପ୍ରଜ୍ଞ ବିଦ୍ୱାନ୍ ଗୁରୁଙ୍କର ଛାତ୍ର ହୋଇ ମୁଁ ଓ ସହପାଠୀ ଦାଶରଥି, ଶରତ, ବିଚିତ୍ରା, କୁଳମଣି, ମୃତ୍ୟୁଞ୍ଜୟ ବିଶେଷ ଭାବେ ଗୌରବାନ୍ୱିତ । ଆମ୍ଭମାନଙ୍କ ଯତ୍‌କିଞ୍ଚିତ୍ ସାରସ୍ୱତ ସାଧନା ତାଙ୍କ କୃପା ଓ ଆଶୀର୍ବାଦର ଯେ ଫଳ ଆମେ ତାହା ମର୍ମେମର୍ମେ ଉପଲବ୍ଧି କରୁଛୁ । ଗୁରୁ-ଗୌରବର ଧ୍ୱଜା ଧରିବାରେ ତାଙ୍କ ଛାତ୍ରମାନେ ନିଷ୍ଠାପର ଉଦ୍ୟମ କଲେ ତାଙ୍କ ଜୀବନବ୍ୟାପି ସାଧନା ଫଳପ୍ରସୂ ହେବ ।



# ପୂଜ୍ୟ ଗୁରୁଦେବ ଡକ୍ଟର ତ୍ରିପାଠୀ

**ଡଃ ଗଙ୍ଗାଧର ବଳ**

ଓଡ଼ିଶାର ଶିକ୍ଷାୟତନ ଓ ବିଶ୍ୱବିଦ୍ୟାଳୟମାନଙ୍କରେ ଜ୍ଞାନର ପରମ୍ପରା କ୍ରମଶଃ ସ୍ତିମିତ ହୋଇ ଆସୁଛି । କର୍ତ୍ତବ୍ୟନିଷ୍ଠା, ଅଧ୍ୟାପନାରେ ଆନ୍ତରିକତା, ଗବେଷଣାରେ ଶ୍ରଦ୍ଧା, ବିଭାଗୀୟ ଶୃଙ୍ଖଳା ଓ ନିୟମିତତା ଧୀରେଧୀରେ ଅତୀତର ବସ୍ତୁ ହୋଇ ଯାଉଛି ।

କେତେକ ବୟୋଜ୍ୟେଷ୍ଠ ଜ୍ଞାନୀଗୁଣୀ ଛାତ୍ରବତ୍ସଳ ଅଧ୍ୟାପକ ସଂସାରରୁ ବିଦାୟ ନେଲେଣି । ଆମ୍ଭମାନଙ୍କର ସୌଭାଗ୍ୟକୁ ଆମେ ଡଃ ଦାଶଙ୍କ ସହ ଆମର ବୟୋଜ୍ୟେଷ୍ଠ, ଜ୍ଞାନୀ, ପ୍ରଜ୍ଞାନିଷ୍ଠ ଛାତ୍ରବତ୍ସଳ ଗୁରୁଦେବ ଡଃ ତ୍ରିପାଠୀଙ୍କ ପୁଣ୍ୟ ପଦରଜର ସ୍ପର୍ଶ ଲାଭ କରିପାରୁଛୁଁ । ତାଙ୍କପରି ନୀତିତତ୍ତ୍ୱପୂର୍ଣ୍ଣ, କର୍ମଠ ଶୃଙ୍ଖଳାପ୍ରିୟ ଅଧ୍ୟାପକ ଓଡ଼ିଶା ଭୂଇଁରେ ଦୁର୍ଲ୍ଲଭ କହିଲେ ଚଳେ ।

ରେଭେନ୍ସା କଲେଜର ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ ପଦରୁ ଅବସର ଗ୍ରହଣ ପରେ ପରେ ସେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗର ପରିଚାଳନା ସହ ଦୀର୍ଘକାଳ ଧରି କଟକ ସିଟି ମହିଳା କଲେଜର ଅଧ୍ୟକ୍ଷ ଭାବରେ ନିଜକୁ କର୍ମ-ଚଞ୍ଚଳ ରଖିଥିଲେ । ବୟସାଧିକ୍ୟ ହେତୁ ସେଠାରୁ ନିଜକୁ ମୁକ୍ତ କରିଥିଲେ ମଧ୍ୟ ନିଜର ପ୍ରିୟ ଭାଷା-ଗବେଷଣା କାର୍ଯ୍ୟରେ ଏବେ ବି ନିମଜ୍ଜିତ ରହିଛନ୍ତି ।

ଚାରିବର୍ଷ କାଳ ତାଙ୍କର ଛାତ୍ର ଏବଂ କିଛି କାଳ ସହକର୍ମୀ ହେବାର ସୌଭାଗ୍ୟ ଲାଭ କରିଛି । ବିଭିନ୍ନ ସମୟରେ ବିଶ୍ୱବିଦ୍ୟାଳୟ କାର୍ଯ୍ୟରେ ତାଙ୍କସହ ସମ୍ବଲପୁର, ବ୍ରହ୍ମପୁର ଓ ଶାନ୍ତିନିକେତନ ଯିବାର ସୌଭାଗ୍ୟ

ହୋଇଛି । ତାଙ୍କର ସଭାପତିତ୍ୱରେ ରାମଚନ୍ଦ୍ର ଭବନଠାରୁ ଆରମ୍ଭ କରି ବିଭିନ୍ନ ସଭାସମିତିରେ ଭାଷଣ ଦେବାରେ ତୃପ୍ତି ଲାଭ କରିଛି ।

ବିଭାଗ ପରିଚାଳନାରେ ତାଙ୍କର ନିଷ୍ଠା ଓ ଶୃଙ୍ଖଳାବୋଧ ଆମ ଜୀବନରେ ଆମକୁ ଯଥେଷ୍ଟ ଦିଗ୍‌ଦର୍ଶନ ଦେଇଛି । କୌଣସି ଅଧ୍ୟାପକ ହଠାତ୍ ଛୁଟି ନେଇଗଲେ ତାଙ୍କର କ୍ଲାସ ଅନଧ୍ୟାୟ ମଧ୍ୟରେ ଆସେ ନାହିଁ । ବିଭାଗୀୟ ମୁଖ୍ୟ ଭାବରେ ସେ ହୁଏତ ନିଜେ ଅଧ୍ୟାପନା କରନ୍ତି ଅଥବା ଅନ୍ୟ କାହାକୁ ଶ୍ରେଣୀକୁ ପଠାନ୍ତି । ୧୯୫୯ରୁ ୧୯୬୩ ଏଇ ଚାରିବର୍ଷ କାଳ ରେଭେନ୍‌ସାରେ ଅଧ୍ୟାପନା କାଳରେ ସାର୍‌ଙ୍କ ବିଭାଗ ପରିଚାଳନାରେ ଆନ୍ତରିକ ସହଯୋଗ କରି ମୁଁ ବେଶ୍ ଆନନ୍ଦ ପାଇଛି, ଶିଖିଛି ମଧ୍ୟ । ତାଙ୍କ ନିର୍ଦ୍ଦେଶାନୁସାରେ ଆଜି କେହି ଅନ୍ୟର ଶ୍ରେଣୀକୁ ଯାଇ ନପାରିଲେ ମୁଁ ନିର୍ଦ୍ଦେଶ ପ୍ରାପ୍ତିମାତ୍ରକେ ବିନା ପ୍ରସ୍ତୁତିରେ ବହୁବାର ଅନ୍ୟର ଶ୍ରେଣୀକୁ ଯାଇ ଅଧ୍ୟାପନା କରି ଆସିଛି । ଅପ୍ରସ୍ତୁତ ସତ୍ତ୍ୱେ ସହସା ଅନ୍ୟର ଶ୍ରେଣୀରେ ଅଧ୍ୟାପନା କରିବାର ଅନୁଭୂତି ହେତୁ ଆତ୍ମବିଶ୍ୱାସ ଓ ଆତ୍ମ-ତୃପ୍ତି ଲାଭ କରିଛି ।

ତାଙ୍କର ସମ୍ପାଦନାରେ ରେଭେନ୍‌ସା କଲେଜ ଓଡ଼ିଆ ସାହିତ୍ୟ ସମାଜ ଓ ଓଡ଼ିଆ ବିଭାଗ ପକ୍ଷରୁ ଦୁଇଟି ପୁସ୍ତକ ପ୍ରକାଶ ପାଇଥିଲା— ଗୋଟିଏ ହେଉଛି ମେହେର ଶତବାର୍ଷିକୀ ଉତ୍ସବ ପାଳନ ଅବସରରେ 'ଗଙ୍ଗାଧର ମେହେର ସମୀକ୍ଷା' ଅନ୍ୟଟି ହେଉଛି 'ଓଡ଼ିଆ ସାହିତ୍ୟ ସମୀକ୍ଷଣ'। 'ଗଙ୍ଗାଧର ମେହେର ସମୀକ୍ଷା' ପୁସ୍ତକଟି ତତ୍କାଳୀନ ଶିକ୍ଷା ବିଭାଗର ମନ୍ତ୍ରୀ ଶ୍ରୀଯୁକ୍ତ ପବିତ୍ରମୋହନ ପ୍ରଧାନଙ୍କ ଦ୍ୱାରା କଲେଜ୍ ହଲରେ ଉନ୍ମୋଚିତ ହୋଇଥିଲା ।

ଓଡ଼ିଆ ଭାଷା, ଲିପି ଓ ଶିଳାଲେଖ ସମ୍ପର୍କୀୟ ଗବେଷଣା ଏବଂ ଗବେଷଣା-ପ୍ରସୂତ ପୁସ୍ତକ (The Evolution of Oriya Language and Script ଯା'ର ଓଡ଼ିଆ ଅନୁବାଦ ହେଉଛି 'ଓଡ଼ିଆ ଭାଷା ଓ ଲିପିର ବିବର୍ତ୍ତନ)' ତାଙ୍କୁ ଓଡ଼ିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ ଅମର ରଖିବ । ତାଙ୍କର ପାଲି 'ଧମ୍ମପଦ'ର ସମ୍ପାଦନା, ଅନୁବାଦ ଓ ସମୀକ୍ଷା ଏବଂ ତ

ଉପାଧ୍ୟୋତ୍ତର ଶ୍ରେଣୀରେ ଏକ ପ୍ରାମାଣିକ ପୁସ୍ତକ ହୋଇ ରହିଛି । ସଂସ୍କୃତ ସାହିତ୍ୟର ବିଭିନ୍ନ ବିଭାବ ଉପରେ ରଚିତ ତାଙ୍କର ପ୍ରବନ୍ଧଗୁଡ଼ିକ 'ସଂସ୍କୃତ ସାହିତ୍ୟ' ଶିରୋନାମାରେ ପ୍ରକାଶିତ ହୋଇଛି । ଓଡ଼ିଶାର ରୀତିଯୁଗର କବି ଘନକୃଷ୍ଣ ଓ ଉପେନ୍ଦ୍ର ଭଞ୍ଜ ପ୍ରଭୃତିଙ୍କ ସମ୍ପର୍କରେ ଆଲୋଚନା ସମୀକ୍ଷକ ଭାବରେ ତାଙ୍କୁ ପ୍ରତିଷ୍ଠିତ କରିଛି । ବିଭିନ୍ନ ଶିଳାଲେଖ, ସନନ୍ଦ ଓ ସାହିତ୍ୟିକ ନମୁନାର ପାଠୋଦ୍ଧାର ଓ ଭାଷାତାତ୍ତ୍ୱିକ ଆଲୋଚନା ତାଙ୍କର ମୌଳିକ ଦୃଷ୍ଟିଭଙ୍ଗୀ ଓ ଚିନ୍ତାଶୀଳତାର ସ୍ୱାକ୍ଷର ବହନ କରେ । ଭାଷା ଓ ଲିପିତତ୍ତ୍ୱ ସମ୍ପର୍କିତ ଗବେଷଣା ପାଇଁ ତାଙ୍କର ଲଣ୍ଡନ୍, ଉତ୍କାମଣ୍ଡ ଓ ନେପାଳ ରହଣି ତାଙ୍କର ନୈସର୍ଗିକ ଶ୍ରଦ୍ଧା ଓ ଅସାଧାରଣ ଧୈର୍ଯ୍ୟର ପରିଚୟ ଦିଏ । ବିଭିନ୍ନ ସମୟରେ ଓରିୟେଣ୍ଟାଲ କନ୍‌ଫରେନ୍‌ସ ଓ ସେମିନାରମାନଙ୍କରେ ଯୋଗଦାନ କରି ନିଜର ଚିନ୍ତାଶୀଳ ସନ୍ଦର୍ଭମାନ ଉପସ୍ଥାପନ କରିଛନ୍ତି ଏବଂ ସମ୍ମିଳନୀରେ ଯୋଗଦାନ ନିମିତ୍ତ ସହକର୍ମୀ ଅଧ୍ୟାପକମାନଙ୍କୁ ଉତ୍ସାହିତ କରି ଆସିଛନ୍ତି । କେବଳ ଓଡ଼ିଆ ଭାଷା ନୁହେଁ, ରାଷ୍ଟ୍ରଭାଷା ହିନ୍ଦୀ ଓ ନାଗରୀ ଲିପିର ପ୍ରଚାର ଓ ପ୍ରସାର ଦିଗରେ ପ୍ରଚେଷ୍ଟା ତାଙ୍କର ଉଦାର ଦୃଷ୍ଟିକୋଣର ପରିଚୟ ଦିଏ ।

କେବଳ ବିଭାଗ ପରିଚାଳନା ନୁହେଁ, ରାଜେନ୍ଦ୍ର କଲେଜ, ବଲାଙ୍ଗିର ଓ ଗଙ୍ଗାଧର ମେହେର କଲେଜର ଅଧ୍ୟକ୍ଷ ଭାବରେ ସେ ନିଜର ଶାସନ-ଦକ୍ଷତା ଓ ଶୃଙ୍ଖଳାପ୍ରିୟତାର ପରିଚୟ ଦେଇଛନ୍ତି । ତାଙ୍କର ଅତିମାତ୍ର ସତ୍ୟନିଷ୍ଠତା ଓ ଶୃଙ୍ଖଳାବୋଧ ବେଳେ ବେଳେ ତାଙ୍କର ସହକର୍ମୀମାନଙ୍କୁ ଅଡ଼ୁଆ ପରିସ୍ଥିତିରେ ପକାଉଥିଲେ ମଧ୍ୟ କେହି ତାଙ୍କ ପ୍ରତି ନାରାଜ ବା ବିଦ୍ୱିଷ୍ଟ ହେବାର ଦେଖାଯାଇ ନାହିଁ ।

ସାର୍ ଖାଦ୍ୟ ପାନୀୟରେ ଅତି ସଂଯତ । ବାର୍ଦ୍ଧକ୍ୟରେ ତାଙ୍କର ଦୃଷ୍ଟିଶକ୍ତି କ୍ରମଶଃ କ୍ଷୀଣ ହୋଇ ଆସୁଥିଲେ ମଧ୍ୟ ନିୟନ୍ତ୍ରିତ ଜୀବନଯାପନ ହେତୁ ଏବେ ବି ସେ ଦୃଢ଼ ଓ କର୍ମକ୍ଷମ ରହିଛନ୍ତି ।

ଜ୍ଞାନୀ ଓ ପଣ୍ଡିତ ବ୍ୟକ୍ତିଙ୍କର ଦୈନନ୍ଦିନ ଜୀବନଯାପନର କେତେକ ଅଭ୍ୟାସ ଓ ଘଟଣା କମ୍ କୌତୂହଳୋଦ୍ଦୀପକ ନୁହେଁ । ସାର୍‌ଙ୍କ ଘରେ ବସି ଦିନେ ତାଙ୍କ ସହ ଆଳାପ କରୁଥାଏଁ । ହଠାତ୍ ମାଡ଼ାମ୍ ଆସି କହି ପକାଇଲେ—

ନୋଟ୍ କରୁଥାଅ, ବସି ଖାଲି ନୋଟ୍ କରୁଥାଅ ।'

ସେ ଚାଲିଗଲା ପରେ ମୁଁ ପଚାରିବା ପୂର୍ବରୁ ସାର୍ କହିଲେ— 'ଗଙ୍ଗାଧର, କ'ଣ ବୁଝିଲ ନା; ମୁଁ ଦୈନିକ ସମାଜ ପଢ଼ି ପ୍ରସିଦ୍ଧ ଘଟଣାର ସଂକ୍ଷିପ୍ତ ନୋଟ୍ କରେଁ । ସେଇ କଥାକୁ ଲକ୍ଷ୍ୟକରି ସେ କହୁଛନ୍ତି ।'

ମାଡ଼ାମ୍‌ଙ୍କ ନିର୍ଦ୍ଦୋଷ ଆକ୍ଷେପ ଓ ସାର୍‌ଙ୍କର କୈଫିୟତରେ ବେଶ୍ ଆମୋଦ ଅନୁଭବ କରୁଥାଏଁ । ସାର୍‌ଙ୍କର ଏ ଅଭ୍ୟାସଟି ମାଡ଼ାମ୍ ବା ଅନ୍ୟମାନଙ୍କ ପକ୍ଷରେ ନଗଣ୍ୟ ଓ ହାସ୍ୟକର ବୋଧ ହେଉଥିଲେ ମଧ୍ୟ ଶୃଙ୍ଖଳାପ୍ରିୟ ଲୋକଙ୍କ ପକ୍ଷରେ ତାହା କେତେ ଗୁରୁତ୍ୱପୂର୍ଣ୍ଣ, ତାହା ଚିନ୍ତାଶୀଳ ବ୍ୟକ୍ତି ଉପଲବ୍ଧି କରିପାରିବେ ।

'ଆଚାରରେ ଲକ୍ଷ୍ମୀ ବିଚାରେ ପଣ୍ଡିତ ।' ବୋଲି ସଂସ୍କୃତରେ ସୂକ୍ତି ରହିଛି । ଜୀବନର ପ୍ରତ୍ୟେକ ଛୋଟବଡ଼ ଘଟଣାରେ ଆମର ଶ୍ରୌତ ପରମ୍ପରାର ଆଚାରଗୁଡ଼ିକର ପାଳନରେ ତାଙ୍କର ନିଷ୍ଠା ଓ ଅନ୍ୟକୁ ତା'ର ଉପଦେଶ ପ୍ରଦାନରେ ସେ ଥିଲେ ଅକୁଣ୍ଠ । ସୂର୍ଯ୍ୟାସ୍ତ ଓ ନିଶାଗମ: ଏହାର ସନ୍ଧି ମୁହୂର୍ତ୍ତିଟି ଏକ ସନ୍ଧ୍ୟା । ପ୍ରାତଃ, ମଧ୍ୟାହ୍ନ ଓ ପ୍ରଦୋଷ ଏଇ ତ୍ରି ସନ୍ଧ୍ୟାରେ ଗାୟତ୍ରୀ ଜପ ଓ ଉପାସନା ବ୍ୟତୀତ ଅଧ୍ୟୟନ ଇତ୍ୟାଦି କାର୍ଯ୍ୟ ନିଷିଦ୍ଧ ରହିଛି । ଏ ଅନଧ୍ୟାୟ ମୁହୂର୍ତ୍ତରେ ଗୁରୁଦେବ ମୋର ଅଧ୍ୟୟନ ଲକ୍ଷ୍ୟକରି କେତେବାର ଉପଦେଶ ଛଳରେ ବାରଣ କରିଛନ୍ତି ।

ଆମର ପାରମ୍ପରିକ ସଂସ୍କୃତ ଓ ଆଚାରନିଷ୍ଠ ଗୁରୁଦେବ ଦୀର୍ଘଜୀବନ (ଶରଦଃ ଶତମ୍) ଲାଭକରି ବାଗ୍‌ଦେବୀଙ୍କର ସାଧନାରେ ଅଭିନିବିଷ୍ଟ ରହି ତାଙ୍କର ଅଗଣିତ ଛାତ୍ରଙ୍କ ମଧ୍ୟରେ ପ୍ରଜ୍ଞାଲୋକ ବିକୀରିତ କରୁଥା'ନ୍ତୁ, ଜଗଦୀଶ୍ୱରଙ୍କ ନିକଟରେ ଏହାହିଁ ପ୍ରାର୍ଥନା ।



# ମୋ ଗୁରୁଦେବ

**ଡକ୍ଟର ଶ୍ରୀ ରାମଚନ୍ଦ୍ର ଦାଶ**

ମୁଁ ରେଭେନ୍ସା କଲେଜରେ ଛାତ୍ରଥିବାବେଳେ ଅଧ୍ୟାପକ ଡ: କୁଞ୍ଜବିହାରୀ ତ୍ରିପାଠୀ ଅସ୍ଥାୟୀ ଭାବରେ ଛ'ମାସ ପାଇଁ ଅଧ୍ୟାପକ ନିଯୁକ୍ତ ହୋଇଥିଲେ । ଏହା ହେଲା ୧୯୩୮ର ଘଟଣା । ସେହିଦିନଠରୁ ଗତ ପଚାଶ ବର୍ଷ ହେଲା ଜଣେ ଛାତ୍ର ଓ ସହକର୍ମୀ ଭାବରେ ତାଙ୍କ ସହିତ ମୋର ଘନିଷ୍ଠତା ରହିଆସିଛି ।

ଆମେ ପଢ଼ିବାବେଳେ ରେଭେନ୍ସା କଲେଜର ତିନିଜଣ ସଂସ୍କୃତ ଅଧ୍ୟାପକ ଥିଲେ । ସେମାନେ ହେଲେ ଶ୍ରୀଯୁକ୍ତ କାଶୀନାଥ ଦାସ, ଶ୍ରୀଯୁକ୍ତ ଆର୍ତ୍ତବଲ୍ଲଭ ମହାନ୍ତି, ଯେ ପରବର୍ତ୍ତୀ ଜୀବନରେ ହେଲେ ରାୟ ବାହାଦୁର ଡ: ମହାନ୍ତି ଓ ଶ୍ରୀଯୁକ୍ତ ଲକ୍ଷ୍ମୀକାନ୍ତ ଚୌଧୁରୀ । ସେତେବେଳେ ସ୍ୱତନ୍ତ୍ର ଓଡ଼ିଆ ବିଭାଗ ନଥିଲା । ସଂସ୍କୃତ ଅଧ୍ୟାପକମାନେ ଓଡ଼ିଆ ଅଧ୍ୟାପନା କରୁଥିଲେ । ପ୍ରତ୍ୟେକ ଶ୍ରେଣୀରେ ସପ୍ତାହକେ ଗୋଟିଏ ମାତ୍ର ଓଡ଼ିଆ ଶ୍ରେଣୀ ଥିଲା । ଓଡ଼ିଆ ଇଚ୍ଛାଧୀନ ବିଷୟ ହୋଇ ନଥିଲା । ଓଡ଼ିଆକୁ ସେତେବେଳେ କୁହାଯାଉଥିଲା ଭର୍ଣ୍ଣାକୁଲାର । ତେଣୁ ଓଡ଼ିଆ ଶିକ୍ଷା ଉପରେ ସେତେବେଳେ ଗୁରୁତ୍ୱ ଦିଆଯାଉ ନଥିଲା । ଅଧ୍ୟାପକ କାଶୀନାଥ ଦାସ ୧୯୩୬ ମସିହା ଅକ୍ଟୋବର ମାସରେ ଅବସର ଗ୍ରହଣ କଲେ । ତାଙ୍କ ସ୍ଥାନରେ ଆସିଲେ ଅଧ୍ୟାପକ ରତ୍ନାକର ପତି, ଯେ କି ଜଣେ ଦର୍ଶନଶାସ୍ତ୍ର ଅଧ୍ୟାପକ ଥିଲେ । ୧୯୩୬ ଅପ୍ରେଲ ପହିଲା ଦିନ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲାବେଳକୁ ରତ୍ନାକର ବାବୁ ରାଞ୍ଚି ଜିଲ୍ଲା ସ୍କୁଲରେ ସହକାରୀ ପ୍ରଧାନ ଶିକ୍ଷକ ଥିଲେ । ଜିଲ୍ଲା ସ୍କୁଲ କେବଳ ପ୍ରବେଶିକା ପରୀକ୍ଷା ଲାଗି ଛାତ୍ର ପ୍ରସ୍ତୁତ କରୁଥିଲା । ରେଭେନ୍ସା ବାଳିକା ବିଦ୍ୟାଳୟ ପରି ସେଠାରେ ମଧ୍ୟ ଆଇ. ଏ. ଶ୍ରେଣୀ ଥିଲା । ତେଣୁ ଅଧ୍ୟାପକ ପତି ଏକ ପକ୍ଷରେ

ଦର୍ଶନ ଅଧ୍ୟାପକ ଓ ଅପର ପକ୍ଷରେ ସହକାରୀ ପ୍ରଧାନଶିକ୍ଷକ ଥିଲେ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ମାତ୍ରକେ ସେ ଆସିଲେ ସମ୍ବଲପୁର ଜିଲ୍ଲା ସ୍କୁଲର ପ୍ରଧାନଶିକ୍ଷକ ରୂପେ । ସେତେବେଳେ ଦର୍ଶନ ଅଧ୍ୟାପକ ପଦ ଖାଲି ନଥିବା ବେଳେ ତାଙ୍କୁ ଓଡ଼ିଆ ଅଧ୍ୟାପକ ରୂପେ ନିଯୁକ୍ତ କରାଯାଇଥିଲା । ଯେତେବେଳେ ୧୯୩୭ ରେ ଦର୍ଶନ ଅଧ୍ୟାପକ ଓ ଫକୀରମୋହନ ସେନାପତିଙ୍କର ପୁତ୍ର ଅଧ୍ୟାପକ ମୋହିନୀମୋହନ ସେନାପତି ଅବସର ଗ୍ରହଣ କଲେ । ତାଙ୍କ ସ୍ଥାନରେ ଆସିଲେ ଅଧ୍ୟାପକ ଶରତଚନ୍ଦ୍ର ଘୋଷାଲ, ଯେ କି ମୁଁ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ସ୍କୁଲ ତ୍ୟାଗ କରିବା ପ୍ରମାଣପତ୍ର ଆଣିବାବେଳେ ରେଭେନ୍‌ସା କଲେଜିଏଟ ସ୍କୁଲର ପ୍ରଧାନଶିକ୍ଷକ ଥିଲେ । ୧୯୩୭ରେ ଅଧ୍ୟାପକ ଘୋଷାଲ, ଅଧ୍ୟାପକ ସେନାପତିଙ୍କ ସ୍ଥାନରେ ଦର୍ଶନଶାସ୍ତ୍ର ବିଭାଗକୁ ଆସିଲେ । ସେ ଶିକ୍ଷା ବିଭାଗ ନିର୍ଦ୍ଦେଶକଙ୍କ ଉପନିର୍ଦ୍ଦେଶକ ହିସାବରେ ସ୍ଥାନାନ୍ତରିତ ହେବାରୁ ତାଙ୍କ ସ୍ଥାନରେ ଓଡ଼ିଆ ଅଧ୍ୟାପକ ରୂପେ ଅପେକ୍ଷା କରିଥିବା ଅଧ୍ୟାପକ ରତ୍ନାକର ପତି ଅଣାଇଥାନ ହେଲେ । ଓଡ଼ିଆ ଅଧ୍ୟାପକ ପଦ ଖାଲିପଡିଲା । ସେହି ଶୂନ୍ୟସ୍ଥାନ ପୂରଣ କରିବା ଲାଗି ଅଧ୍ୟାପକ କୁଞ୍ଜବିହାରୀ ତ୍ରିପାଠୀ ନିଯୁକ୍ତ ହୋଇଥିଲେ । ତାଙ୍କ ନିଯୁକ୍ତିର ଅବ୍ୟବହିତ ପରେ ୧୯୪୦ ଜାନୁୟାରୀ ୮ ତାରିଖ ଦିନ ସଂସ୍କୃତ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀଙ୍କର ପରଲୋକ ହୋଇଗଲା, ତେଣୁ ଦୁଇଗୋଟି ଅଧ୍ୟାପକ ପଦ ଖାଲି ରହିଲା । ଅଧ୍ୟାପକ କାଶୀନାଥ ଦାସ ଅବସର ଗ୍ରହଣ କରି ସାରିଥିଲେ ଓ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀ ଅକାଳରେ ପରଲୋକ ଗମନ କରିଥିଲେ । ଉଭୟ ପଦ ମଣ୍ଡନ କଲେ ଅଧ୍ୟାପକ କୁଞ୍ଜବିହାରୀ ତ୍ରିପାଠୀ । ତେଣୁ ତାଙ୍କପାଇଁ ନିଯୁକ୍ତିର ଅଭାବ ନଥିଲା ।

କୁଞ୍ଜବାବୁ ପୁରୀମାନଙ୍କରେ ଜଣେ ପଣ୍ଡିତ କହିଲେ ଚଳେ । ସେ ଲକ୍ଷ୍ମୀକାନ୍ତ ଚୌଧୁରୀଙ୍କ ପରେ ବ୍ୟାକରଣରେ ଜଣେ ଧୁରୀଣ ବ୍ୟକ୍ତି । ତାଙ୍କ ଅଧ୍ୟାପନାବେଳେ ସେ ପ୍ରତ୍ୟେକ ଶବ୍ଦର ଅନ୍ୱୟ ଓ ଧାତୁପ୍ରତ୍ୟୟ କରି ଛାତ୍ରମାନଙ୍କ ମନକୁ ଶବ୍ଦତତ୍ତ୍ୱ ପ୍ରତି ଆକୃଷ୍ଟ କରିପାରୁଥିଲେ । ଅନେକ ଛାତ୍ର ଓ ତାଙ୍କର କେତେକ ସହକର୍ମୀ ମଧ୍ୟ ତାଙ୍କ ସରଳତାର ସୁବିଧା ନେଇଛନ୍ତି ।

କେତେକ ଘଟଣା ବର୍ଣ୍ଣନା କଲେ ତାଙ୍କ ସରଳତା ପ୍ରମାଣିତ ହେବ ସିନା କିନ୍ତୁ ତାହା ତାଙ୍କ ବ୍ୟକ୍ତିତ୍ବରେ ଆଘାତ ଆଣିପାରେ । ତେବେ ଗୋଟିଏ ବିଷୟ ଉଲ୍ଲେଖ ନକଲେ କଥାଟା ଜଣାପଡ଼ିବ ନାହିଁ । ମୋର ଦୁଇଜଣ ସହାଧ୍ୟାୟିନୀ ଥିଲେ । ଜଣେ ହେଲେ କୁମାରୀ ଶାନ୍ତିଲତା ବେହେରା, ଯେ କି ସଂସ୍କୃତରେ ସ୍ନାତକୋତ୍ତର ଉପାଧି ଲାଭକରି ରମାଦେବୀ ମହିଳା କଲେଜର ଅଧ୍ୟକ୍ଷା ରୂପେ ଅବସର ଗ୍ରହଣ କରିଛନ୍ତି । ଅନ୍ୟ ଜଣକ ହେଲେ କୁମାରୀ ସୁଖଲତା ରାୟ ଯେ ପୁରୀ ବାଳିକା ବିଦ୍ୟାଳୟର ପ୍ରଧାନ ଶିକ୍ଷୟିତ୍ରୀ ରୂପେ ଅବସର ନେଇଥିଲେ ଉଭୟ ସଂସ୍କୃତ ଅନର୍ସ ଶ୍ରେଣୀର ଛାତ୍ରୀ ଥିଲେ । ସେତେବେଳେ କଲେଜରେ ପରଂପରା ଥିଲା ଛାତ୍ରମାନେ ବାହାରେ ଠିଆ ହୋଇ ରହିବେ ଓ ଅଧ୍ୟାପକ ଆସିଲେ ତାଙ୍କ ସହିତ ଶ୍ରେଣୀ କକ୍ଷରେ ପ୍ରବେଶ କରିବେ । ଅଧ୍ୟାପକ ତ୍ରିପାଠୀ କ୍ଲାସ ନେବାକୁ ଆସି ବାହାରେ କିଛି ସମୟ ଅପେକ୍ଷା କଲେ ଏହି ଦୁଇ ଛାତ୍ରୀଙ୍କ ପାଇଁ । ସେମାନେ ନ ଆସିବାରୁ ସେ ଶ୍ରେଣୀକୁ ଚାଲିଗଲେ । ଅନ୍ୟ ପିଲାଙ୍କୁ ପଚାରିଲେ—'Why are Peace and Happiness (ଶାନ୍ତି ଓ ସୁଖ) absent to-day ?' ଠିକ୍ ସେତିକିବେଳେ କୁମାରୀ ଶାନ୍ତିଲତା ବେହେରା ଓ କୁମାରୀ ସୁଖଲତା ରାୟ ଶ୍ରେଣୀ ଗୃହରେ ପ୍ରବେଶ କରୁଥିଲେ । ସେମାନେ ନିଜକୁ ଅପମାନିତ ମନେ କଲେ । ତାଙ୍କ ଅନର୍ସ କ୍ଲାସବେଳେ ଆମର ଅର୍ଥନୀତି ଅନର୍ସ କ୍ଲାସ ଥିଲା । ଆମ କ୍ଲାସ ଶେଷ ହେବା ପରେ ସେମାନେ ଛାତ୍ରମାନଙ୍କ ସାଧାରଣ କକ୍ଷରୁ ମୋତେ ଡ଼କାଇ ଅଧ୍ୟକ୍ଷ ଡ଼କ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ନିକଟକୁ ସେମାନଙ୍କ ସାଙ୍ଗରେ ଯାଇ ଆପତ୍ତି କରିବା ଲାଗି କହିଲେ । ଅଭିଯୋଗ—ଅଧ୍ୟାପକ ତ୍ରିପାଠୀ ସେମାନଙ୍କୁ ଜାଣିଶୁଣି ଅପମାନିତ କରିଛନ୍ତି । ମୁଁ ସେମାନଙ୍କ କଥାରେ ରାଜି ହେଲି ନାହିଁ । କିନ୍ତୁ ସେମାନଙ୍କୁ ସାଙ୍ଗରେ ନେଇ ଅଧ୍ୟାପକମାନଙ୍କ ପ୍ରକୋଷ୍ଠରୁ ଅଧ୍ୟାପକ ତ୍ରିପାଠୀଙ୍କୁ ଡ଼କାଇ ପଚାରିଲି—"ସାର୍ ଆପଣ କ'ଣ ସେମାନଙ୍କୁ ଶାନ୍ତି ଓ ସୁଖ ବଦଳରେ Peace and Happiness କହିଲେ ? ପିଲାମାନେ ହସିଲେ । ସେମାନେ ଅପମାନିତ ବୋଧ କରିବାରୁ ଅଧ୍ୟକ୍ଷଙ୍କ ନିକଟରେ ଆପତ୍ତି ଜଣାଇବାକୁ ଆଗ୍ରହୀ ।" ଅଧ୍ୟାପକ ତ୍ରିପାଠୀ ସରଳଭାବରେ କହିଲେ କଲେଜରେ ଇଂରାଜୀ ମାଧ୍ୟମରେ ପଢ଼ାଯାଏ । ପୁଣି ସେମାନେ ଦୁହେଁ

ଯୁବକଣ୍ଠ ଗ୍ରନ୍ଥୀ, ମୁଁ ସେମାନଙ୍କ ନାମ ଧରିଆଣ୍ଟି କପରି ? ତେଣୁ ଇଂରାଜୀରେ Peace and Happiness ବୋଲି ପଢ଼ିଲି । ସେମାନଙ୍କୁ ଅପମାନିତ କରିବା ମୋର ଉଦ୍ଦେଶ୍ୟ ନଥିଲା ? ଏହା ପରେ କୁମାରୀ ଶାନ୍ତି ଓ କୁମାରୀ ସୁଖ ସନ୍ତୁଷ୍ଟ ହୋଇ ହସିହସି ଚାଲିଗଲେ; ଆଉ ଅପମାନିତ ବୋଧ କଲେ ନାହିଁ କି ଆପତ୍ତି କଲେ ନାହିଁ ।

୧୯୪୮ରେ ଓଡ଼ିଆରେ ସ୍ନାତକୋତ୍ତର ବିଭାଗ ଖୋଲିଲା ଏବଂ ଓଡ଼ିଆରେ ସ୍ନାତକୋତ୍ତର ଉପାଧିଧାରୀ ବ୍ୟକ୍ତି ବାହାରିଲେ । ତା ପୂର୍ବରୁ କେବଳ କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆରେ ସ୍ନାତକୋତ୍ତର ବିଭାଗ ଥିଲା । ସେଠି ଅଧ୍ୟାପନା କରୁଥିଲେ ପଣ୍ଡିତ ବିନାୟକ ମିଶ୍ର ଓ ମେଦିନୀପୁରର ଶ୍ରୀ ମନୋହରଣ ଦାଶ । ପଣ୍ଡିତ ମିଶ୍ର ଥିଲେ ଜଣେ ସୁପଣ୍ଡିତ କିନ୍ତୁ ଯୋଗ୍ୟତାରେ ଜଣେ କାବ୍ୟତୀର୍ଥ । ଶ୍ରୀ ଦାଶଥିଲେ ଜଣେ ତାଲିମପ୍ରାପ୍ତ ମାଟ୍ରିକୁଲେଟ୍ । ସେ ଦୁହିଙ୍କ ଅଧ୍ୟାପନାରେ ପ୍ରଥମ ଓଡ଼ିଆ ସ୍ନାତକୋତ୍ତର ଉପାଧିଧାରୀ ହେଲେ ଅଧ୍ୟାପକ କୁଞ୍ଜବିହାରୀ ଦାଶ । ଘରୋଇ ଭାବରେ ଅଧ୍ୟାପକ ରାଜକିଶୋର ରାୟ ଓଡ଼ିଆରେ ସ୍ନାତକୋତ୍ତର ଉପାଧି ପରୀକ୍ଷା ଦେଇଥିଲେ । ଅଧ୍ୟାପକ କୁଞ୍ଜବିହାରୀ ଦାଶ ପ୍ରଥମେ ଓଡ଼ିଆରେ ସ୍ନାତକୋତ୍ତର ଉପାଧି ପାଇଲା ପରେ ସଂସ୍କୃତରେ ଘରୋଇ ଭାବରେ ପରୀକ୍ଷା ଦେଇ ସ୍ନାତକୋତ୍ତର ଉପାଧି ଲାଭ କରିଥିଲେ । ଯାହା ଫଳରେ ସେ ସଂସ୍କୃତ ଶିକ୍ଷା ବିଭାଗର ଅଧୀକ୍ଷକ ହେଲେ । ଅଧ୍ୟାପକ ରାଜକିଶୋର ରାୟ ପ୍ରଥମେ ଇଂରାଜୀରେ ପାଟନା ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଉପାଧି ଲାଭ କରିଥିଲେ । କିନ୍ତୁ ଅଧ୍ୟାପକ ପଦଲାଗି ତାହା ଯଥେଷ୍ଟ ନହେବାରୁ ସେ କଲିକତା ବିଶ୍ୱବିଦ୍ୟାଳୟରୁ ଘରୋଇ ଭାବରେ ପରୀକ୍ଷା ଦେଇ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ୧୯୪୮ ରେ ଓଡ଼ିଆରେ ସ୍ନାତକୋତ୍ତର ବିଭାଗ ସୃଷ୍ଟି ହେଲା ଓ ପଣ୍ଡିତ ଡ଼: କରୁଣାକର କର ସ୍ନାତକୋତ୍ତର ବିଭାଗର ବିଧିବଦ୍ଧ ମୁଖ୍ୟ ଅଧ୍ୟାପକ ନିଯୁକ୍ତ ହେଲେ । ତାଙ୍କ ପୂର୍ବରୁ ଡ଼: ଆର୍ତ୍ତବଲ୍ଲଭ ମହାନ୍ତି ଓଡ଼ିଆ ବିଭାଗର ଦାୟିତ୍ୱ ବୁଝୁଥିଲେ ଓ ତାଙ୍କୁ ସାହାଯ୍ୟ କରିବାଲାଗି କବି ବୈକୁଣ୍ଠନାଥ ପଟ୍ଟନାୟକ ଓ ଅଧ୍ୟାପକ ରାମଚନ୍ଦ୍ର ମହାପାତ୍ର ଅଳ୍ପଦିନ ପାଇଁ ଓଡ଼ିଆ ଅଧ୍ୟାପକ ନିଯୁକ୍ତ

ହୋଇଥିଲେ । ମୁଖ୍ୟ ଅଧ୍ୟାପକଙ୍କୁ ସଂସ୍କୃତ ଓ ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ କୁହାଯାଉଥିଲା କିନ୍ତୁ ଦୁଇ ବିଭାଗ ପାଇଁ ସ୍ୱତନ୍ତ୍ର ଓଡ଼ିଆ ଶିକ୍ଷାଦାନ ଓ ସଂସ୍କୃତ ଶିକ୍ଷାଦାନ ଅଧ୍ୟାପକ ନିଯୁକ୍ତ ହୋଇଥିଲେ । ଓଡ଼ିଆ ମଧ୍ୟ ଇଚ୍ଛାଧୀନ ବିଷୟରୂପେ ପାଠ୍ୟକ୍ରମରେ ସ୍ଥାନ ପାଇଲା । ଏହା କହିଲେ ଅପ୍ରାସଙ୍ଗିକ ହେବନାହିଁ ଯେ ପରବର୍ତ୍ତୀକାଳରେ ବିଶିଷ୍ଟ ଶିକ୍ଷାବିତ୍ ହୋଇଥିବା ଦୁଇଜଣ ଅଧ୍ୟାପକ ଓଡ଼ିଆ ଶିକ୍ଷାକୁ ଉଠାଇ ଦେଇଥିଲେ । ସେମାନଙ୍କ ମତଥିଲା ଯେ ସପ୍ତାହରେ ଗୋଟିଏ ପିରିଅଡ଼ ଭର୍ଣ୍ଣାକୁଲାର ନ ପଢ଼ିଲେ କୌଣସି କ୍ଷତି ହେବ ନାହିଁ । ରାୟବାହାଦୁର ଚିନ୍ତାମଣି ଆଚାର୍ଯ୍ୟ ବିଶ୍ୱ କୁଳପତି ରୂପେ ନିଯୁକ୍ତ ହେବା ପରେ ୧୯୫୦ରେ ବାଧ୍ୟତାମୂଳକ ଓଡ଼ିଆ ଶିକ୍ଷା ପ୍ରବର୍ତ୍ତନ କଲେ ।

ଅଧ୍ୟାପକ କୁଞ୍ଜବିହାରୀ ତ୍ରିପାଠୀ ଯୁଦ୍ଧୋତ୍ତର ଯୋଜନାନୁସାରେ ଡ଼କ୍ଟର ସଦାଶିବ ମିଶ୍ର, ଡ଼କ୍ଟର ବଂଶୀଧର ସାମନ୍ତରାୟ, ଡ଼କ୍ଟର ବ୍ରହ୍ମାନନ୍ଦ ମିଶ୍ର, ଡ଼କ୍ଟର ରମାନାଥ ମହାନ୍ତି, ଡ଼କ୍ଟର ରାଧାନାଥ ରଥ, ଡ଼କ୍ଟର ଦେବେନ୍ଦ୍ରଚନ୍ଦ୍ର ମିଶ୍ର ଓ ଅଧ୍ୟାପକ ବିଧୁଭୂଷଣ ଦାସଙ୍କ ପରି ସଂସ୍କୃତରେ ଉଚ୍ଚ ଶିକ୍ଷାଲାଭ କରିବା ନିମନ୍ତେ ଲଣ୍ଡନ ବିଶ୍ୱବିଦ୍ୟାଳୟକୁ ଯାଇଥିଲେ । ଏହି ବିଶ୍ୱବିଦ୍ୟାଳୟର ପ୍ରାଚ୍ୟବିଦ୍ୟା କେନ୍ଦ୍ର ଭାରତରେ ବିଖ୍ୟାତ ଥିଲା । ଏହି କେନ୍ଦ୍ରର ଜନ୍ ବୋଲଟନ୍ ଫକୀରମୋହନ ସେନାପତିଙ୍କୁ ବିଶ୍ୱ-ଦରବାରରେ ପରିଚିତ କରାଇଛନ୍ତି । ଅଧ୍ୟାପକ କୁଞ୍ଜବିହାରୀ ତ୍ରିପାଠୀ ସେହି ଅନୁଷ୍ଠାନରେ ଗବେଷଣା କରି ସଂସ୍କୃତରେ ଡ଼କ୍ଟରେଟ ଉପାଧି ଲାଭକରି ଭାରତକୁ ଫେରିବାପରେ ଡ଼କ୍ଟର କରୁଣାକର କରଙ୍କ ଅଧୀନରେ ରିଡ଼ର୍ ନିଯୁକ୍ତ ହୋଇଥିଲେ ଓ ଡ଼କ୍ଟର କରଙ୍କ ଅବସର ଗ୍ରହଣ ପରେ ସଂସ୍କୃତ ଓ ଓଡ଼ିଆ ଯୁଗ୍ମ ବିଭାଗର ମୁଖ୍ୟ ଅଧ୍ୟାପକ ରୂପେ କାର୍ଯ୍ୟକଲେ । କୁହାଯାଏ ଯେ ଭୁବନେଶ୍ୱରକୁ ବିଶ୍ୱବିଦ୍ୟାଳୟର ମୁଖ୍ୟ କାର୍ଯ୍ୟାଳୟ ଉଠିଯିବାର ବ୍ୟବସ୍ଥା ହେବାବେଳେ ଡ଼କ୍ଟର ତ୍ରିପାଠୀଙ୍କ ପରାମର୍ଶରେ ବିଶ୍ୱବିଦ୍ୟାଳୟ ପୀଠର ନାମକରଣ ହେଲା 'ବାଣୀ ବିହାର' । ଏହି ନାମକରଣକୁ ଅନୁସରଣ କରି ବ୍ରହ୍ମପୁରରେ 'ଭଞ୍ଜବିହାର' ଓ ସମ୍ବଲପୁରରେ 'ଜ୍ୟୋତିବିହାର' ରୂପେ ବିଶ୍ୱବିଦ୍ୟାଳୟ ପୀଠର ନାମକରଣ

କରାଯାଇଛି । ଏହି 'ବିହାର' ଶବ୍ଦ ଭୁବନେଶ୍ୱରର ଆଞ୍ଚଳିକ ନାମକରଣରେ ବି ବ୍ୟବହୃତ ହୋଇଛି । ଡକ୍ଟର ତ୍ରିପାଠୀ ଏ କ୍ଷେତ୍ରରେ ଜଣେ ଯୁଗ ପ୍ରବର୍ତ୍ତକ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଓଡ଼ିଶାରେ ପାଲିଭାଷାର ଏକଦା ପ୍ରାଦୁର୍ଭାବ ଥିଲା । ତାହାହିଁ ଥିଲା ବୌଦ୍ଧ ଓ ଜୈନ ଶାସନବେଳେ କଥିତ ଭାଷା । ସଂସ୍କୃତର କଥିତ ଭାଷାକୁ ପ୍ରାକୃତଭାଷା କହିବାପରି ପାଲିକୁ ମଧ୍ୟ ପ୍ରାକୃତ ଭାଷା ଶ୍ରେଣୀଭୁକ୍ତ କରାଯାଇପାରେ । ପଣ୍ଡିତ ଅଧ୍ୟାପକ ଡ଼ଃ କରୁଣାକର କର ବୌଦ୍ଧଗାନ ଓ ଦୋହା ଉପରେ ଗବେଷଣା କରି ଡକ୍ଟରେଟ୍ ଉପାଧି ଲାଭ କରିଥିଲେ । ଡ଼ଃ କୁଞ୍ଜବିହାରୀ ତ୍ରିପାଠୀ ସେହିପରି ପାଲିଭାଷା ଉପରେ ଗବେଷଣା କରି ଡକ୍ଟରେଟ ଲାଭ କରିଛନ୍ତି । ପାଲି ଭାଷାରେ ଡଃ ତ୍ରିପାଠୀଙ୍କର ଅଗାଧ ଜ୍ଞାନ ଭାରତୀୟ ପ୍ରାଚ୍ୟ ବିଦ୍ୟା ସମ୍ମିଳନୀରେ ତାଙ୍କୁ ଯଥେଷ୍ଟ ସୁଖ୍ୟାତି ଆଣି ଦେଇଛି । ସେ କେବଳ ସଂସ୍କୃତ ଅଧ୍ୟାପକ ରୂପେ ନୁହେଁ, ଭାଷାତତ୍ତ୍ୱ ବିଶେଷଜ୍ଞ ରୂପେ ବିଭିନ୍ନ ବିଶ୍ୱବିଦ୍ୟାଳୟରେ ନିବନ୍ଧ ପରୀକ୍ଷକ ରୂପେ ଆଦୃତ ହୋଇଛନ୍ତି ।

ଓଡ଼ିଶା ସରକାରୀ ଚାକିରୀରୁ ଅବସର ଗ୍ରହଣ କରିବା ପରେ ସେ ଅଳ୍ପ ସମୟ ନିଯୁକ୍ତିବିହୀନ ହୋଇ ରହିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟରେ ୧୯୫୭ରେ ସଂସ୍କୃତରେ ସ୍ନାତକୋତ୍ତର ଶିକ୍ଷା ଆରମ୍ଭ ହୋଇଥିଲା । ଡ଼ଃ ଆର୍ତ୍ତବଲ୍ଲଭ ମହାନ୍ତି ଓ ଡ଼ଃ କରୁଣାକର କର ଉକ୍ତ ଅଧ୍ୟାପନାର ଦାୟିତ୍ୱ ବହନ କରିଥିଲେ । ପରବର୍ତ୍ତୀ ବର୍ଷ ଅଧ୍ୟାପକ ପ୍ରହ୍ଲାଦ ପ୍ରଧାନ ଉତ୍କଳ ବିଶ୍ୱବିଦ୍ୟାଳୟର ସଂସ୍କୃତ ବିଭାଗର ମୁଖ୍ୟ ଅଧ୍ୟାପକ ନିଯୁକ୍ତ ହେବାରୁ ବିଶ୍ୱବିଦ୍ୟାଳୟ ଡ଼ଃ ତ୍ରିପାଠୀଙ୍କ ସେବା ଗ୍ରହଣ କରିପାରିଲା ନାହିଁ । ତାହା ହୋଇଥିଲେ ସେ ଷାଠିଏ ବର୍ଷ ବୟସ ପର୍ଯ୍ୟନ୍ତ ଅବସର ଗ୍ରହଣ କରିନଥାନ୍ତେ । ତାଙ୍କ ଜ୍ଞାନର ପରିସୀମା ଓ ଅଧ୍ୟାପନାର ଦକ୍ଷତା ସର୍ବଜନବିଦିତ ଥିବାରୁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଦ୍ୱିତୀୟ କୁଳପତି ଓଡ଼ିଶାର ନୂତନ ଅତିରିକ୍ତ ମୁଖ୍ୟ ସଚିବ ରଘୁନାଥ ପ୍ରସାଦ ପାଢ଼ୀ ଓଡ଼ିଆ ବିଭାଗର ଦାୟିତ୍ୱ ବହନ କରିବାଲାଗି ଡକ୍ଟର ତ୍ରିପାଠୀଙ୍କୁ ନିମନ୍ତ୍ରଣ କଲେ । ସେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ

ବିଭାଗର ମୁଖ୍ୟ ହେଲେ । ସବୁ ବିଭାଗର ମୁଖ୍ୟ ଅଧ୍ୟାପକମାନଙ୍କ ତୁଳନାରେ ସେ ବରିଷ୍ଠ ହୋଇଥିବାରୁ ସେ ମଧ୍ୟ ସ୍ନାତକୋତ୍ତର ବିଭାଗ ସମୂହର ମୁଖ୍ୟ ନିଯୁକ୍ତ ହୋଇଥିଲେ । ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଏପରି ନିଯୁକ୍ତିର ପରମ୍ପରା ଥିଲା । ୧୯୬୭ରେ ସ୍ନାତକୋତ୍ତର ପରିଷଦ ବାଣୀବିହାରରେ ଗଠିତ ହେବା ପରେ ସେହି ଆଦର୍ଶରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ମଧ୍ୟ ଏପରି ପରିଷଦ ଗଠିତ ହୋଇଛି ଏବଂ ପ୍ରତିବର୍ଷ ଜଣେ ଜଣେ ମୁଖ୍ୟ ଅଧ୍ୟାପକ ଏହାର ଅଧ୍ୟକ୍ଷ ହୁଅନ୍ତି । ଡ଼ଃ ତ୍ରିପାଠୀଙ୍କ ଅମଳରେ ପରିଷଦ ଗଠିତ ହୋଇ ନଥିଲା ବୋଲି ସେ ଅବସର ଗ୍ରହଣ କରିବା ପର୍ଯ୍ୟନ୍ତ ସ୍ନାତକୋତ୍ତର ବିଭାଗଗୁଡିକର ମୁଖ୍ୟ ରୂପେ ଏକାଧିକ ବର୍ଷ ଲାଗି ଦାୟିତ୍ୱ ବହନ କରିଥିଲେ ।

ସାଧାରଣତଃ କୁହାଯାଏ ଯେ ସଂସ୍କୃତ ପଣ୍ଡିତମାନେ ଭଲ ପ୍ରଶାସନ କରିପାରନ୍ତି ନାହିଁ; କିନ୍ତୁ ଅଧ୍ୟାପକ ଡ଼ଃ କୁଞ୍ଜବିହାରୀ ତ୍ରିପାଠୀ କେବଳ ଗୋଟିଏ ସରକାରୀ ବଲାଙ୍ଗୀର କଲେଜରେ ଅଧ୍ୟକ୍ଷ ରୂପେ ନୁହେଁ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ବିଭାଗର ମୁଖ୍ୟରୂପେ ନିଜର ପ୍ରଶାସକୀୟ ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ସେଥିପାଇଁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ଅବସର ଗ୍ରହଣ କରିବା ପରେ 'କଟକ ନଗର ମହିଳା କଲେଜ' ନାମକ ଏକ ଘରୋଇ ଅନୁଷ୍ଠାନର ପରିଚାଳନା ସମିତିର ଅଧ୍ୟକ୍ଷ 'ସମାଜ' ସମ୍ପାଦକ ଡ଼ଃ ରାଧାନାଥ ରଥ ଡ଼ଃ ତ୍ରିପାଠୀଙ୍କୁ ନିମନ୍ତ୍ରଣ କରି ସେ କଲେଜର ଅଧ୍ୟକ୍ଷରୂପେ ନିଯୁକ୍ତ କରିଛନ୍ତି ଏବଂ ତାଙ୍କ ପରିଚାଳନାରେ ଏହି କଲେଜର ଉତ୍ତରୋତ୍ତର ଉନ୍ନତି ସାଧିତ ହୋଇଛି— ପ୍ରତ୍ୟେକ ଶ୍ରେଣୀର ଛାତ୍ରୀ ସଂଖ୍ୟା ୧୯୨ ପର୍ଯ୍ୟନ୍ତ ହେଲାଣି ।

ଅଧ୍ୟାପକ ଡ଼ଃ କୁଞ୍ଜବିହାରୀ ତ୍ରିପାଠୀ ଜଣେ ଛାତ୍ରବତ୍ସଳ ଅଧ୍ୟାପକ ରୂପେ ଛାତ୍ରମହଲରେ ଜଣାଶୁଣା ଥିଲେ ବି ଗୋଟିଏ ଘଟଣା ବର୍ଣ୍ଣନା କଲେ ତାହା ଅପ୍ରାସଙ୍ଗିକ ହେବନାହିଁ । ଡ଼ଃ ଗୋପାଳଚନ୍ଦ୍ର ମିଶ୍ର ଓଡ଼ିଆ ବିଭାଗରେ ତାଙ୍କର ଛାତ୍ର ଓ ପରେ ଜଣେ ସହକର୍ମୀ ଥିଲେ । ପରବର୍ତ୍ତୀ ଜୀବନରେ ଗୋପାଳ ସମ୍ବଲପୁର ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ ରୂପେ ଅବସର ଗ୍ରହଣ କରିଥିଲେ । ଉକ୍ତର

ତ୍ରିପାଠୀ ଥିଲେ ଗୋପାଳର ଡକ୍‌ଟରେଟ ନିବନ୍ଧ ଲାଗି ନିର୍ଦ୍ଦେଶକ । ଜର୍ମାନୀ ବିଶ୍ୱବିଦ୍ୟାଳୟମାନଙ୍କରେ ନିବନ୍ଧ ନିର୍ଦ୍ଦେଶକମାନଙ୍କୁ ଡକ୍‌ଟର-ଫାଦର ବା ଡ଼କ୍ଟର-ପିତା ବୋଲି ବର୍ଣ୍ଣନା କରାଯାଏ । ଡ଼କ୍ଟର ତ୍ରିପାଠୀ ଗୋପାଳର କେବଳ ଡ଼କ୍ଟର-ଫାଦର ନଥିଲେ, ସବୁ ବିଷୟରେ ସେ ଗୋପାଳକୁ ପିତୃପ୍ରତିମ ପରାମର୍ଶ ଦେଇ ଆସୁଥିଲେ । ଗୋପାଳର ହୃଦ୍‌ଯନ୍ତ୍ରଣା ଆରମ୍ଭ ହେବା ପରେ ବି ସେ ଡଃ ତ୍ରିପାଠୀଙ୍କୁ ସାକ୍ଷାତ୍ କରିବାକୁ ଯାଇଥିଲା ଏବଂ ହୃଦ୍‌ଯନ୍ତ୍ରଣା ପ୍ରତି ଗୁରୁତ୍ୱ ଦେଉନଥିଲେ । ଡ଼ଃ ତ୍ରିପାଠୀ ଜବରଦସ୍ତ ଗୋପାଳକୁ ନେଇ ଡାକ୍ତରଖାନାରେ ଭର୍ତ୍ତି କରାଇଥିଲେ । ତାହାର ଦୁଇଦିନ ପରେ ଗୋପାଳର ପରଲୋକ ହୋଇ ଯିବାରୁ ଡ଼ଃ ତ୍ରିପାଠୀ ତାହାର ରୋଗଶଯ୍ୟା ଠାରୁ ଆରମ୍ଭ କରି ତାହାର ମରଶରୀର ଦାହ ହେବା ପର୍ଯ୍ୟନ୍ତ ତା'ଠାରୁ ମୁହୂର୍ତ୍ତେ ମାତ୍ର ଦୂରେଇ-ଯାଇ ନଥିଲେ । ଗୋପାଳକୁ ସାହାଯ୍ୟ କରିବା ଲାଗି ବହୁ ସବଳ ଲୋକ ଥିଲେ । ତଥାପି ପ୍ରତ୍ୟେକ କାର୍ଯ୍ୟରେ ଡ଼ଃ ତ୍ରିପାଠୀ ନିର୍ଦ୍ଦେଶ ନଦେଲେ ତାଙ୍କୁ ଶାନ୍ତି ମିଳୁନଥିଲା । ମୁଁ ସେଦିନ ଗୋପାଳର ଶବ ପାଖରେ ଡ଼ଃ ତ୍ରିପାଠୀଙ୍କୁ ଯେପରି ଶୋକ ବିହ୍ୱଳ ଅବସ୍ଥାରେ ଦେଖିଲି ତାହାସିନା ଅଙ୍ଗେ ନିଭାକଥା, କିନ୍ତୁ ଭାଷାରେ ବର୍ଣ୍ଣନା କରିହେବ ନାହିଁ ।

ଡଃ ତ୍ରିପାଠୀଙ୍କର ବହୁ କର୍ମ ଶିଷ୍ୟ ଅଛନ୍ତି । ତାଙ୍କର ଜଣେ ଛାତ୍ର ତାଙ୍କଠାରୁ ବହୁ ସୁବିଧା ମାରିନେଇ ପରେ ତାଙ୍କପ୍ରତି ଶତ୍ରୁତା ଆଚରଣ କରିଛି ଓ ତାଙ୍କର ନିନ୍ଦାବାଦ୍ କରି ଆସିଛି; କିନ୍ତୁ ସେଥିରେ ଡ଼ଃ ତ୍ରିପାଠୀ ବିଚଳିତ ହୋଇ ନାହାନ୍ତି । ଭଗବତ୍ ଦୟାରୁ ସେ ଗୋଟିଏ ସୁଖୀ ଓ ସୁସ୍ଥ ପରିବାରର ଅଭିଭାବକ ଓ ତାଙ୍କ ପୁତ୍ରକନ୍ୟାମାନେ ସୁପ୍ରତିଷ୍ଠିତ । ଏହା କେବଳ ଡ଼ଃ ତ୍ରିପାଠୀଙ୍କର ସୁକୃତିର ପ୍ରତିଦାନ ବ୍ୟତୀତ ଅନ୍ୟ କିଛି ନୁହେଁ ।



# ଶ୍ରଦ୍ଧାଞ୍ଜଳି

## ଡକ୍ଟର (ଶ୍ରୀମତୀ) ସାବିତ୍ରୀ ରାଉତ

ଆମର ସାର୍ (ଅଧ୍ୟାପକ) ଡ଼କ୍ଟର କୁଞ୍ଜବିହାରୀ ତ୍ରିପାଠୀ—ଯାହାଙ୍କର ଜନ୍ମ ୧୯୧୧ ମସିହା—ବର୍ତ୍ତମାନ ସେ ଅଶିତି-ଉତ୍ତର ବର୍ଷୀୟାନ । ବର୍ଷୀୟାନ କି ? ଏଇ ହେଉଛି—ତାରିଖଟା ମନେ ପଡ଼ୁନାହିଁ—ବୋଧହୁଏ ତିରିଶି ପାଞ୍ଚ ଛଅ ମସିହା । କଟକରେ ମୁଁ ରେଭେନ୍ସା କଲେଜ ଆଡ଼େ ରିକ୍ସାରେ ଯାଉଛି—ହଠାତ୍ ସାର୍‌ଙ୍କ ସହିତ ଦେଖା । ସେପଟୁ ଆମ ସାର୍ ବ୍ୟାଗ୍ ଖଣ୍ଡିଏ ଧରି ଚାଲି ଚାଲି ଆସୁଛନ୍ତି । (ଯାହା ତାଙ୍କର ଅଧ୍ୟାପକ ଜୀବନର ଅଭ୍ୟାସ) । କିଏ କହିବ ଅଶିତି-ଉତ୍ତର ବର୍ଷୀୟାନ୍ ? ଯୁବକର ଗୋଡ଼ରେ ସେ ଚାଲି ଚାଲି ଆସୁଥାନ୍ତି । ମୁଖରେ ସ୍ମିତହାସ୍ୟ ଲାଗି ରହିଛି—(ଯେଉଁ ସ୍ମିତହାସ୍ୟ କଲେଜରେ ଆମକୁ ପଢ଼ାଇବା ଦିନରୁ ଲାଗି ରହିଥାଏ)—ଜଣେ ଛାତ୍ର ସେତେବେଳେ କୌତୂହଳ-ପ୍ରବଣ ହୋଇ ପଚାରିଥିଲେ—ସାର୍ ! ଆପଣଙ୍କ ମୁଖରେ କ'ଣ ସବୁବେଳେ ସ୍ମିତହାସ୍ୟ ଲାଗି ରହିଛି ? ଆପଣଙ୍କୁ "ଭଗବଦ୍ ଗୀତା" ସ୍ଥିତପ୍ରଜ୍ଞ ପରି ମନେ ହେଉଛି !! ଉତ୍ତର ମିଳିଥିଲା ସେହି ସ୍ମିତହାସ୍ୟ !! ସେହି ଅବସରରେ ମୋର ମନେ ପଡିଗଲା ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଦୁଇଟି ଲାଇନ୍ × × ବାଇରେ ଯାର୍ ହାସିର ଛଟା ଭେତରେ ତା'ର ଚୋଖେର ଜଲ !! × × ×

ହୁଏତ ତାଂକ ଜୀବନର ପ୍ରଚ୍ଛଦପଟରେ କିଛି ଅଶ୍ରୁଳ କାହାଣୀ ରହିଛି, ଯାହାର ପରିପ୍ରକାଶ ଏକ ନିରବଚ୍ଛିନ୍ନ ସତେଜ ହାସ୍ୟମୁଖ । ଯାହା ଅଶିତି ବର୍ଷରେ ସୁଦ୍ଧା ମ୍ଳାନ ହୋଇନାହିଁ । ଦୁନିଆର ସକଳ ଦୁଃଖଝଞ୍ଜା ସହି ଯେଉଁପରି ସତେଜ ମଧୁର ରହି ଆସିଛି ସେ ସ୍ମିତ ହାସ୍ୟଟି ?

ହଁ !! କଥାର ସୂତ୍ର ଛିନ୍ନ ହୋଇଗଲା—ମୁଁ ଏପଟୁ ରିକ୍‌ସାରେ ଯାଉଥିଲି -- ସାର୍ ସେପଟୁ ଚାଲି ଚାଲି ଆସୁଥିଲେ । ମୁଁ ରିକ୍‌ସା ଅଟକାଇ ସାର୍‌ଙ୍କୁ ନମସ୍କାରଟିଏ କଲି । ସସ୍ନେହରେ ମୋ ମୁଣ୍ଡରେ ହାତଟି ରଖିଲେ—ସେହି ସ୍ନିଗ୍ଧ, ସ୍ନେହ ସ୍ପର୍ଶର ଧାରାରେ ମୁଁ କୃତକୃତ୍ୟ ହୋଇଗଲି ସେପରି !! ମୁଁ ସାର୍‌ଙ୍କୁ କହିଲି —"ସାର୍" ଆପଣଂକ ଗନ୍ତବ୍ୟ ସ୍ଥାନ କହନ୍ତୁ । ଏ ରିକ୍‌ସା ଆପଣଙ୍କୁ ପହଞ୍ଚାଇ ଦେବ । ସାର୍‌ଙ୍କ ଠାରୁ ଉତ୍ତର ମିଳିଲା ସସ୍ନେହ ଦୃଢ଼ ପ୍ରତ୍ୟାଖ୍ୟାନ । ମୁଁ ମଧ୍ୟ ଛାଡ଼ିବାର ଲୋକ ନୁହେଁ !! ତାଂକ ଗନ୍ତବ୍ୟ ସ୍ଥଳରେ ପହଞ୍ଚାଇ ଦେଇ ଫେରିଲି !!

ଅଧ୍ୟାପକ ତ୍ରିପାଠୀ ପାଟଣା ବିଶ୍ୱବିଦ୍ୟାଳୟରୁ ସଂସ୍କୃତ ସାହିତ୍ୟରେ ଏମ୍. ଏ. ପାସ୍ କରି ୧୯୩– ମସିହାରେ ରେଭେନ୍‌ସା କଲେଜରେ ସଂସ୍କୃତ ଅଧ୍ୟାପକ ରୂପେ ଯୋଗ ଦେଇଥିଲେ । ସେତେ-ବେଳେ ସଂସ୍କୃତ ଓ ଓଡ଼ିଆ ବିଭାଗ ଏକତ୍ର କାର୍ଯ୍ୟ କରୁଥିଲା । ପରେ ସେ ଲଣ୍ଡନ୍ ବିଶ୍ୱବିଦ୍ୟାଳୟରୁ "ଅଭିଲେଖ" ବିଷୟରେ ଗବେଷଣା କରି Ph. D. ଡିଗ୍ରୀ ଲାଭ କରିଥିଲେ । ଅଧ୍ୟାପକ ତ୍ରିପାଠୀ ଏକାଧାରରେ ଗବେଷକ, ପ୍ରାବନ୍ଧିକ ଏବଂ ଓଡ଼ିଆ ସାହିତ୍ୟର ବିଭିନ୍ନ ଦିଗରେ ଲେଖନୀ ଚାଳନା କରି ଓଡ଼ିଆ ସାହିତ୍ୟକୁ ବୃଦ୍ଧିମନ୍ତ ଓ ସମୃଦ୍ଧ କରିଅଛନ୍ତି । ଓଡ଼ିଶା ସାହିତ୍ୟ ଏକାଡ଼େମୀ ତାଙ୍କର ଯୋଗ୍ୟତାକୁ "ସାହିତ୍ୟ ଏକାଡ଼େମୀ" ସମ୍ମାନ ଦ୍ୱାରା ସମ୍ମାନିତ କରିଅଛନ୍ତି । କାଳକ୍ରମେ ଓଡ଼ିଆ ଓ ସଂସ୍କୃତ ବିଭାଗ ପୃଥକ୍ ହୁଅନ୍ତେ ଅଧ୍ୟାପକ ତ୍ରିପାଠୀ ରେଭେନ୍‌ସା କଲେଜ ଓଡ଼ିଆ ବିଭାଗର ସ୍ନାତକୋତ୍ତର ଓଡ଼ିଆ ଅଧ୍ୟାପକ (ପ୍ରଫେସର) ରୂପେ ମନୋନୀତ ହୋଇ ଦୀର୍ଘକାଳ ସେହି ପଦବୀକୁ ଅଳଂକୃତ କରିଥିଲେ । ଅବସର ଗ୍ରହଣ ପରେ (ସରକାରୀ ଚାକିରୀରୁ) କିଛିଦିନ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗର ପ୍ରଫେସର ରୂପେ କାର୍ଯ୍ୟ କରିଥିଲେ । ପ୍ରଶାସକରୂପେ ବଲାଙ୍ଗୀର ଓ ଗଙ୍ଗାଧର ମେହେର କଲେଜର ପ୍ରିନ୍‌ସିପାଲ୍ ଥିଲେ ।

ଓଡ଼ିଆ ଭାଷା ଓ ସାହିତ୍ୟ କହିଲେ ଆଜି ମଧ୍ୟ ବହୁ ଶିକ୍ଷିତ ଲୋକ ନାସିକା କୁଞ୍ଚନ କରନ୍ତି । ଏ ପ୍ରଦେଶରେ ଲୋକେ ଅନ୍ୟ ଭାଷାଭାଷୀ-

ମାନଙ୍କର ବହି ପତ୍ରିକା ଯେତେ ପଢ଼ନ୍ତି ଓ କ୍ରୟ କରନ୍ତି ତାହା ତୁଳନାରେ ଓଡ଼ିଆ ବହି ଓ ପତ୍ରିକା ଖୁବ୍ କମ୍ କିଣନ୍ତି । ପଢ଼ିବା ମଧ୍ୟ ତଦ୍ରୂପ । ଅଧ୍ୟାପକ ତ୍ରିପାଠୀ ସେହି ଓଡ଼ିଆ ଭାଷା ଓ ସାହିତ୍ୟରେ ଗବେଷଣା କରି ପ୍ରତିପାଦନ କରିବାକୁ ଚାହୁଁଥିଲେ ଯେ ଯେଉଁ ଜାତି ତା'ର ଭାଷା ଓ ସାହିତ୍ୟକୁ ଧରି ରଖିପାରେ ନାହିଁ, ସେ ଜାତି ବିଶ୍ୱଦରବାରରେ ସମ୍ମାନାସ୍ପଦ ଆସନ ପାଇପାରେ ନାହିଁ । ସୁତରାଂ ଓଡ଼ିଆ ଭାଷା ଓ ସାହିତ୍ୟକୁ ଉନ୍ନତ କରିବା ପାଇଁ ସେ ସତତ ଚେଷ୍ଟିତ ଥିଲେ ।

ସେହି ସଦାନନ୍ଦମୟ ଗବେଷଣାଗ୍ରହୀ, ଶିକ୍ଷାପ୍ରେମୀ, କର୍ତ୍ତବ୍ୟନିଷ୍ଠ, ଛାତ୍ରବତ୍ସଳ ତଥା ଉଦାର ହୃଦୟ ଆମ ସାର୍ ଅଧ୍ୟାପକ ଡକ୍ଟର ତ୍ରିପାଠୀଙ୍କ ପାଦତଳେ ଶତ ପ୍ରଣାମ ।



# ଓଡ଼ିଆ ଲିପିର କ୍ରମବିକାଶ

**ଖଗେଶ୍ୱର ମହାପାତ୍ର**

[ପ୍ରଫେସର କୁଞ୍ଜବିହାରୀ ତ୍ରିପାଠୀଙ୍କ ସର୍ବପ୍ରଧାନ କୃତି 'ଓଡ଼ିଆ ଭାଷା ଓ ଲିପିର ବିବର୍ତ୍ତନ' । ଏହା ତାଙ୍କର ଲଣ୍ଡନ ବିଶ୍ୱବିଦ୍ୟାଳୟରେ ୧୯୫୯-୬୧ ମଧ୍ୟରେ ପ୍ରସ୍ତୁତ ଥିସିସ୍ । ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ୧୯୬୨ରେ ଏହା ପ୍ରକାଶିତ ଏବଂ ଏହାର ଏକ ସଂକ୍ଷିପ୍ତ ଓଡ଼ିଆ ସଂସ୍କରଣ ମଧ୍ୟ ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଦ୍ୱାରା ୧୯୮୪ରେ ପ୍ରକାଶିତ । ଡ଼ଃ ତ୍ରିପାଠୀ ତାଙ୍କ ଥିସିସ୍‌ରେ ଓଡ଼ିଆ ଲିପିର କ୍ରମବିକାଶ ଅଭିଲେଖର ପ୍ରମାଣ ଉପରେ ପ୍ରତିପାଦନ କରିଛନ୍ତି । ତାଙ୍କର ଉପାଦାନ ଓ ବିବେଚନା ଅବଲମ୍ବନରେ ପ୍ରସ୍ତୁତ ଏହି ପ୍ରବନ୍ଧଟି ପ୍ରକୃତପକ୍ଷେ ତାଙ୍କ ପ୍ରତି ଏକ ଶ୍ରଦ୍ଧା ନିବେଦନ ।]

**ଉପକ୍ରମ—**

ମୌଖିକ ଧ୍ୱନିର ରୈଖିକରୂପ ଲିପି । ଲିପି ଧ୍ୱନିକୁ ସ୍ଥାୟିତ୍ୱ ପ୍ରଦାନ କରେ ଏବଂ ଅବ୍ୟକ୍ତ ଚିନ୍ତାଧାରାକୁ ପ୍ରକାଶିତ କରେ । ପ୍ରତ୍ୟେକ ଲିପିର ସୃଷ୍ଟି ମୂଳରେ ତିନୋଟି ଉଦ୍ଦେଶ୍ୟ କାର୍ଯ୍ୟକରେ—ଧ୍ୱନିର ଯଥାର୍ଥ ରୂପାୟନ, ଦ୍ରୁତଲିଖନ ଓ ମିତ ସ୍ଥାନ । ଅବଶ୍ୟ କେତେକ କ୍ଷେତ୍ରରେ ଲିଖନର ଉପକରଣ ଅନ୍ୟତମ କାରଣ ହୋଇପାରେ । ଏହି ଉଦ୍ଦେଶ୍ୟଗୁଡ଼ିକ ମଧ୍ୟ ସମୟାନୁକ୍ରମେ ଯେକୌଣସି ଲିପିର ସଂସ୍କାର ମୂଳରେ ନିହିତ ଥାଏ । ପ୍ରାଚୀନ ଅଭିଲେଖ, ପୋଥିପତ୍ର ଓ ବିଗତ

ଲେକର ହାତଲେଖା କାଗଜପତ୍ର ଅନୁଶୀଳନ କଲେ ଓଡ଼ିଆ ଲିପି ଯେ ଅବସ୍ଥାନୁକ୍ରମେ ପରିବର୍ତ୍ତିତ ହୋଇଆସିଛି, ଏହା ଉପଲବ୍ଧ ହୁଏ । ଛାପାଖାନା ପ୍ରତିଷ୍ଠା ହେବାପରେ ଆମର ଲିପି ଏକ ସ୍ଥାୟୀ ଓ ସାର୍ବଜନୀନ ରୂପ ପରିଗ୍ରହ କରିଥିଲା ଏବଂ ତାହାହିଁ ବର୍ତ୍ତମାନର ଆଦର୍ଶ ଲିପି । ବର୍ତ୍ତମାନର ଏହି ଅବସ୍ଥାକୁ ଆସିବା ପର୍ଯ୍ୟନ୍ତ ଯେଉଁ ବିବର୍ତ୍ତନର ଧାରାରେ ଓଡ଼ିଆ ଲିପି ଗତି କରିଛି ତାହାର ଆକଳନ ନିମ୍ନୋକ୍ତ ବିବରଣୀରେ ଦ୍ରଷ୍ଟବ୍ୟ ।

ଓଡ଼ିଆ ଲିପି ଅନ୍ୟାନ୍ୟ ଆଧୁନିକ ଭାରତୀୟ ଲିପିମାନଙ୍କ ପରି ବ୍ରାହ୍ମୀଲିପିରୁ ବିକଶିତ । ଓଡ଼ିଶାର ଅଭିଲେଖମାଳା ଏବଂ ତାଳପତ୍ର ପୋଥିଗୁଡ଼ିକର ଲିପିତାତ୍ତ୍ୱିକ ଅଧ୍ୟୟନ କଲେ ଖ୍ରୀଷ୍ଟପୂର୍ବ ତୃତୀୟ ଶତକରେ ଧଉଳିଗିରି ଓ ଜଉଗଡ଼ରେ ଉତ୍କୀର୍ଣ୍ଣ ଅଶୋକଙ୍କ ଅନୁଶାସନଠାରୁ ଆରମ୍ଭ କରି ବିଗତ ଶତାବ୍ଦୀର ଶେଷଭାଗରେ ଲିଖିତ ତାଳପତ୍ର ପୋଥିସମୂହର ଅବଲମ୍ବନରେ ଓଡ଼ିଆ ଲିପିର କ୍ରମବିବର୍ତ୍ତନର ଧାରା ନିର୍ଣ୍ଣୟ କରା-ଯାଇପାରେ । ଲେଖନକାରଙ୍କ ବ୍ୟକ୍ତିଗତ କଳାତ୍ମକ ଅଭିରୁଚି ଏବଂ ଲିଖନ ଉପାଦାନ ଓ ଉପକରଣର ବୈଶିଷ୍ଟ୍ୟ ଅନୁସାରେ ଓଡ଼ିଆ ଲିପିରେ କେତେକ ରୂପଗତ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୋଇଥିଲେ ହେଁ, ଅଦ୍ୟାପି ଏଥିରେ ବ୍ରାହ୍ମୀ ଓ ଅନ୍ୟାନ୍ୟ ପ୍ରାଚୀନ ଲିପିର ସତ୍ତା ସୁସ୍ପଷ୍ଟ । ପ୍ରାଚୀନ କାଳରେ ଓଡ଼ିଶାରେ ଲିଖନର ପ୍ରଧାନ ମାଧ୍ୟମ ଥିଲା ପାଷାଣଗାତ୍ର, ତାମ୍ରଫଳକ ଓ ତାଳପତ୍ର ଏବଂ ଲିଖନର ଉପକରଣ ଥିଲା ଲୌହ ନିହାଣ ଓ ଲେଖନୀ । ଏହାରି ଭିତ୍ତିରେ ଓଡ଼ିଆ ଲିପିର ରୂପ-ସଙ୍ଗଠନରେ ଚତୁର୍ବିଧ ବୈଶିଷ୍ଟ୍ୟ ବିକଶିତ ହୋଇଥିଲା—ଅର୍ଦ୍ଧବୃତ୍ତାକାର ଶୀର୍ଷ-ମୁଣ୍ଡିଳ (Top curve), ପୁଚ୍ଛ (Tail), ପୁଡ଼ା (Loop) ଏବଂ କୋଣସ୍ଥାନ କୁଟିଳ ବକ୍ରରେଖା (Curve) ଅବଶ୍ୟ ଏହି ସମସ୍ତ ରୈଖିକ ବୈଚିତ୍ର୍ୟ ଓଡ଼ିଆ ଲିଖନକାରଙ୍କର ଏକାନ୍ତ ମୌଳିକ ସୃଷ୍ଟି ନ ହୋଇପାରେ; କାରଣ ପୂର୍ବେ ଅକ୍ଷର ଶୀର୍ଷଭାଗରେ ଆଚ୍ଛାଦନ ନିମନ୍ତେ ଚୂଳ (ପରବର୍ତ୍ତୀ ବ୍ରାହ୍ମୀଲିପିରେ), ମୁଣ୍ଡିଳ (ତାମିଳ ବୋଟ୍ଟେଲୁତ୍ତୁ ଲିପିରେ), ଚତୁଷ୍କୋଣୀ ପେଟିକା ଓ ଶଙ୍କୁ (ପଞ୍ଚମ/ଷଷ୍ଠ ଶତାବ୍ଦୀ ଲିପିରେ) ଇତ୍ୟାଦି ପ୍ରଚଳିତ

ଥିଲା । କିନ୍ତୁ ତାଳପତ୍ର ଉପରେ ଲୌହ ଲେଖନୀରେ ଲେଖିବା ଦୃଷ୍ଟିରୁ ଶୀର୍ଷମଣ୍ଡଳ ଓ କୋଣସ୍ଥିତ ବକ୍ରରେଖାର ଏବଂ ଅଳଂକରଣ ତଥା ଏକାଧିକ ଅକ୍ଷରର ଆକୃତିଗତ ସାଦୃଶ୍ୟ ମଧ୍ୟରେ ସ୍ୱତନ୍ତ୍ରତା ପରିସ୍ଫୁଟନ ପାଇଁ ଫୁଟା ଓ ଫୁଙ୍କର ପ୍ରୟୋଜନ ଉପଲବ୍ଧି କରି ଓଡ଼ିଆ ଲିପିକାର ଏହି ସବୁ ଆଭୂଷଣର ଯଥାର୍ଥ ଉପଯୋଗ ସାଧନ କରିଥିଲେ । ସୁତରାଂ ଓଡ଼ିଆ ଲିପିର କୌଣସି ଏକ ବୈଶିଷ୍ଟ୍ୟ ପ୍ରତି ଦୃଷ୍ଟି ଦେଇ ଏହା ବଙ୍ଗଳା, ନାଗରୀ ବା ତାମିଲ ଲିପିରୁ ଉଦ୍ଭୂତ କହିବା ଉଚିତ ନୁହେଁ ।

## ଓଡ଼ିଆ ଲିପିର ଉତ୍ପତ୍ତି ଓ କ୍ରମବିକାଶ :

ଆଧୁନିକ ଓଡ଼ିଆ ଲିପିର ବିକାଶ ମୂଳରେ ପ୍ରାଚୀନ ଓଡ଼ିଶାରେ ପ୍ରଚଳିତ ବିବିଧ ଲିପିମାଳାର ଅବଦାନ ଅନସ୍ୱୀକାର୍ଯ୍ୟ । ଅଦ୍ୟାବଧି ଆବିଷ୍କୃତ ଅଭିଲେଖମାନଙ୍କ ଅବଲମ୍ବନରେ ସେହିସବୁ ଲିପିମାଳାର ଏକ ଐତିହାସିକ ବିବରଣୀ ବର୍ଣ୍ଣନୀୟ ।

ବ୍ରାହ୍ମୀଲିପି : ଜଉଗଡ଼ ଓ ଧଉଳିଗିରିସ୍ଥ ଅଶୋକାନୁଶାସନ (ଖ୍ରୀ: ପୂ: ୩ୟ ଶତକ)

ଉଦୟଗିରିସ୍ଥ ଖାରବେଳଙ୍କ ହାତୀଗୁମ୍ଫା ଅଭିଲେଖ (ଖ୍ରୀ: ପୂ: ୧ମ ଶତକ)

କୁଶାଣ ବ୍ରାହ୍ମୀ : ଭଦ୍ରକସ୍ଥ ଗଣଙ୍କ ଅଭିଲେଖ (ଖ୍ରୀ: ୩ୟ ଶତକ)

ଗୁପ୍ତଲିପି : ଧର୍ମରାଜଙ୍କ ସୁମଣ୍ଡଳ ତାମ୍ରଶାସନ (ଖ୍ରୀ: ୫୭୦)
ଲୋକବିଗ୍ରହଙ୍କ କଣାସ ତାମ୍ରଶାସନ (ଖ୍ରୀ: ୬୦୦)
ଶିବରାଜଙ୍କ ପଟିଆକେଲ୍ଲା ତାମ୍ରଶାସନ (ଖ୍ରୀ: ୬୦୨)
ମାଧବବର୍ମାଙ୍କ ଗଞ୍ଜାମ ତାମ୍ରଶାସନ (ଖ୍ରୀ: ୬୨୦)

ପେଟିକାଶିର, ଶଙ୍କୁଶିର,

କୁଟିଳଲିପି : ଗଙ୍ଗ, ଭୌମ, କର ଓ ସୋମବଂଶୀମାନଙ୍କ ଅଭିଲେଖ (ଖ୍ରୀ: ୮ମ-୧୧ଶ ଶତକ)

ଦକ୍ଷିଣ ନାଗରୀ : Buhler's later Kalinga Script

ସତ୍ତ ଭୂଜଙ୍ଗାପ୍ତ]

ଉରଜାମ ଅଭିଲେଖ (ଖ୍ରୀ: ୧୦୫୧)

ଗ୍ରନ୍ଥ/ତାମିଳ : ଭୁବନେଶ୍ୱରସ୍ଥ ଦ୍ୱିଭାଷିକ ଅଭିଲେଖ (ଖ୍ରୀ: ୧୨୭୧)

ନାଗରୀ : ଶ୍ରୀ କୂର୍ମେଶ୍ୱର ଅଭିଲେଖ (ଖ୍ରୀ: ୧୪୦୩)

ଏକଥା ସ୍ମରଣୀୟ ଯେ ସପ୍ତମ ଶତାବ୍ଦୀରୁ ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାରେ ଲିପି ପ୍ରୟୋଗ ଦିଗରେ ନାନାବିଧ ପରୀକ୍ଷା ପ୍ରଚଳିତ ଥିଲା । ବିଭିନ୍ନ ରାଜଶକ୍ତିର ଅଭ୍ୟୁଦୟ, ରାଜନୈତିକ ଦୃଷ୍ଟିରୁ ଓଡ଼ିଶାର ଭୌଗୋଳିକ ବିଭାଜନ ଏବଂ ବିଭିନ୍ନ ଐତିହ୍ୟ ଓ ସଂସ୍କୃତିର ସ୍ୱାତନ୍ତ୍ର୍ୟବୋଧ ହେତୁ ଏକାଦିକ୍ରମେ ବିଭିନ୍ନ ଲିପିର ପ୍ରଚଳନ ହୋଇଥିଲା । ଶ୍ରୀ ସତ୍ୟନାରାୟଣ ରାଜଗୁରୁ ଏହି ପରିସ୍ଥିତିର ବିବରଣୀ ଦେଇ କହନ୍ତି— "ଖ୍ରୀଷ୍ଟୀୟ ୮ମ ଶତାବ୍ଦୀରୁ ଆରମ୍ଭ କରି ୧୧ଶ ଶତାବ୍ଦୀ ପର୍ଯ୍ୟନ୍ତ ଯେଉଁ ଶାସନାବଳୀ ଓଡ଼ିଶାରେ ଉତ୍କୀର୍ଣ୍ଣ କରାଯାଇଛି; ସେଗୁଡ଼ିକ ପରୀକ୍ଷା କଲେ ସ୍ପଷ୍ଟ ଜଣାଯାଏ ଯେ, ମଧ୍ୟଯୁଗରେ ପ୍ରଚଳିତ ଦୁଇ ପ୍ରକାର ଲିଖନଶୈଳୀ ଅନ୍ତର୍ଗତ ବର୍ଣ୍ଣମାଳା କାଳକ୍ରମେ ସାମାନ୍ୟ ପରିବର୍ତ୍ତିତ ଆକାରରେ ଦେଖାଦେଲା । ତା' ଫଳରେ ଓଡ଼ିଶାରେ ବିଭିନ୍ନ ପ୍ରକାର ଲେଖା ଦେଖାଗଲା । ପୂର୍ବୋତ୍ତର ଅଞ୍ଚଳସ୍ଥ ଭୌମ, ଭୁଙ୍ଗ, ଶୁଳ୍କି, ନନ୍ଦୋଦ୍ଭବ ପ୍ରଭୃତି ବଂଶୀୟ ରାଜାମାନେ ଯେଉଁ ଲିପି ସେମାନଙ୍କର ଶାସନାବଳୀରେ ବ୍ୟବହାର କରିଛନ୍ତି, ତାହା ଓଡ଼ିଶାର ଦକ୍ଷିଣ-ପଶ୍ଚିମାଞ୍ଚଳରେ ପ୍ରାପ୍ତ ଦେଖାଯାଏ ନାହିଁ । ଦକ୍ଷିଣାଞ୍ଚଳ, ଅର୍ଥାତ୍ କଳିଙ୍ଗରେ ତତ୍କାଳୀନ ବ୍ୟବହୃତ ଲିପିସଙ୍ଗେ ସେ ସମୟରେ ପଡ଼ୋଶୀ ରାଜ୍ୟ ବେଙ୍ଗୀରେ ବ୍ୟବହୃତ ଲିପିର ସାମଞ୍ଜସ୍ୟ ସ୍ପଷ୍ଟ ଲକ୍ଷିତ ହୁଏ । ସେହିପରି ପଶ୍ଚିମାଞ୍ଚଳ, ଅର୍ଥାତ୍ ଦକ୍ଷିଣ-କୋଶଳରେ ସୋମବଂଶୀ ଭଞ୍ଜ, ନାଗ ପ୍ରଭୃତି ରାଜାମାନଙ୍କ ବ୍ୟବହୃତ ଲିପିରେ ଉତ୍ତର ଭାରତୀୟ ଶୈଳୀର ପ୍ରଭାବ ପଡ଼ିଥିବା ଦେଖାଯାଏ । ପୂର୍ବଭାରତୀୟ ଶୈଳୀ ଭୌମମାନଙ୍କର ବ୍ୟବହୃତ ଅନୁଶାସନଗୁଡ଼ିକରେ ପରିଦୃଷ୍ଟ ହୁଏ । ସଂକ୍ଷେପରେ କହିବାକୁ ଗଲେ,

ଭାରତୀୟ ବର୍ଣ୍ଣମାଳାର ପ୍ରାଚୀନ ଆକୃତି କାଳକ୍ରମେ ପ୍ରାଦେଶିକ ଭେଦରେ ବଦଳିଯିବା ସଙ୍ଗେ ସଙ୍ଗେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ଏପରି ଲିପିର ଭେଦ ଘଟିଥିଲା ।"

(ଓଡ଼ିଆ ଲିପିର କ୍ରମବିକାଶ, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ୧୯୬୦)

ଏହି ସମୟରେ ଲିପି ପ୍ରୟୋଗ କ୍ଷେତ୍ରରେ ଯେଉଁ ପରୀକ୍ଷାମୂଳକ ପରିସ୍ଥିତି ସୃଷ୍ଟି ହୋଇଥିଲା, ତାର ଏକ ବିଶେଷ ଦୃଷ୍ଟାନ୍ତ ହେଉଛି ଯେ ଅନନ୍ତ ବର୍ମ ଦେବଙ୍କ ମନ୍ଦାସା ତାମ୍ରଶାସନରେ (ଖ୍ରୀ: ୯୯୯) ବ୍ୟବହୃତ ସର୍ବମୋଟ ୬୩୮ଟି ଅକ୍ଷର ମଧ୍ୟରୁ ୧୯୯ଟି ଦକ୍ଷିଣ-ନାଗରୀ, ୫୯ଟି ତେଲଗୁ, ୧୦୧ଟି ଗ୍ରନ୍ଥ, ୧୫୬ଟି ଓଡ଼ିଆ ଏବଂ ଅବଶିଷ୍ଟାଂଶ କଳିଙ୍ଗ ଗଙ୍ଗମାନଙ୍କ ବ୍ୟବହୃତ ଲିପି ସଦୃଶ । (G. Ram Das—J.B.O.R.S. Vol. XVII, Pts. 2-3) ମୂଳତଃ ଏହି ସମୟରେ ବିଭିନ୍ନ ଲିପିର ଆଦର୍ଶରେ ଓଡ଼ିଆ ବର୍ଣ୍ଣମାଳାର ଯଥାର୍ଥ ଓ ସୁନ୍ଦର ଉଲ୍ଲେଖନ ନିମନ୍ତେ ସର୍ବବିଧ ପରୀକ୍ଷା ଓ ପ୍ରୟୋଗ ଆରମ୍ଭ ହୋଇଥିଲା । ଧ୍ୱନିତାତ୍ତ୍ୱିକ ଦୃଷ୍ଟିକୋଣରୁ ଲ-ଳ, ଯ-ୟ, ବ-ୱ ମଧ୍ୟରେ ଭେଦ ପ୍ରଦର୍ଶନ ପାଇଁ ବିଶିଷ୍ଟ ଆଭୂଷଣ ପ୍ରୟୋଗ, ରଚନା-ସୌନ୍ଦର୍ଯ୍ୟ ଓ ସ୍ଥାପତ୍ୟରୁଚି ଦୃଷ୍ଟିରୁ ଶୀର୍ଷ-ମଣ୍ଡଳୀ ଓ କୁଟିଳ ରେଖାବିନ୍ୟାସ ସୌନ୍ଦର୍ଯ୍ୟବୃଦ୍ଧି ଓ ଧ୍ୱନିଗତ ସ୍ୱାତନ୍ତ୍ର୍ୟ ପ୍ରକାଶ ପାଇଁ ପୁଚ୍ଛ ସଂଯୋଜନ ଆଦି କେତେକ ବୈଶିଷ୍ଟ୍ୟ ପ୍ରଚଳନ ହୋଇଥିଲା । ଅନୁମାନ କରାଯାଏ, ତୋଷାଳୀର ଭୌମବଂଶୀୟ ରାଜାମାନେ ପ୍ରଥମେ ପୁଚ୍ଛର ପ୍ରୟୋଗ ଆରମ୍ଭ କରିଥିଲେ ଏବଂ କୋଶଳୋତ୍କଳର ସୋମବଂଶୀ ରାଜାମାନେ କୁଟିଳାକ୍ଷରର ବହୁଳ ପ୍ରଚାର କରିଥିଲେ । ପରବର୍ତ୍ତୀକାଳରେ ଏହି ପୁଚ୍ଛ ଓ କୁଟିଳ ରେଖା ବ୍ୟାପକ ଉଦ୍ଦେଶ୍ୟରେ ଓଡ଼ିଆ ଲିପିରେ ସଂରକ୍ଷିତ ହୋଇଥିଲା ।

## ଓଡ଼ିଆ ଓ ଅନ୍ୟାନ୍ୟ ପ୍ରତିବେଶୀ ଲିପି :

ଐତିହାସିକ କାରଣରୁ ତଥା ଶୈଳୀଗତ ସମତା ଦୃଷ୍ଟିରୁ ଓଡ଼ିଆ ଲିପି ମୁଖ୍ୟତଃ ଚାରୋଟି ଭାରତୀୟ ଲିପି ସହିତ ତୁଳନୀୟ—ତାମିଲ ଓ

ତେଲଗୁ, ବଙ୍ଗଳା ଏବଂ ନାଗରୀ ଲିପି । ଦାକ୍ଷିଣାତ୍ୟ ସହିତ ଓଡ଼ିଶାର ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ସମ୍ପର୍କ ଖାରବେଳଙ୍କ ସମୟରୁ (ଖ୍ରୀ: ପୂ: ୧ମ ଶତାବ୍ଦୀ) ତେଲଙ୍ଗା ମୁକୁନ୍ଦ ଦେବ ପର୍ଯ୍ୟନ୍ତ ( ଖ୍ରୀ: ୧୬ଶ ଶତାବ୍ଦୀ ) ଘନିଷ୍ଠ ଭାବେ ପ୍ରତିଷ୍ଠିତ ହୋଇଥିଲା । ତାମିଲ, ତେଲଗୁ ଓ କନ୍ନଡ ଭାଷାରେ ଉତ୍କଳୀୟ ରାଜାନୁଶାସନ ପ୍ରଦତ୍ତ ହୋଇଥିବାରୁ ଏବଂ ଓଡ଼ିଆ ଅଭିଲେଖ ତେଲଗୁ ଲିପିରେ ଉତ୍କୀର୍ଣ୍ଣ ହୋଇଥିବାରୁ, ଉତ୍କଳୀୟ ଲିପିର ଦାକ୍ଷିଣାତ୍ୟ ଲିପିମାନ ସହିତ ନିବିଡ଼ ସଂଯୋଗ ଘଟିଥିଲା । ବିଶେଷତଃ ଉଭୟ ଅଞ୍ଚଳରେ ତାଳପତ୍ର ଉପରେ ଲୌହ ଲେଖନୀ ଦ୍ୱାରା ଲିଖନ ପଦ୍ଧତି ପ୍ରଚଳିତ ଥିବାରୁ ଉଭୟର ବର୍ତ୍ତୁଳାକ୍ଷରର ବିବର୍ତ୍ତନ ହୋଇଥିଲା । ଉଭୟ ଲିପିର ସଂଯୋଗର ସ୍ମାରକୀ ସ୍ୱରୂପ ଓଡ଼ିଆ 'ଅ, ଆ' ବର୍ଣ୍ଣ ଦୁଇଟି ତାମିଲ ବଟ୍ଟେଳୁତ୍ତୁ ଲିପିରୁ ଗୃହୀତ ହୋଇ ଅଦ୍ୟାପି ସଂରକ୍ଷିତ ହୋଇଛି ।

ପୂର୍ବଭାରତରେ ଅର୍ଥାତ୍ ଆସାମ, ବଙ୍ଗଳା, ଉତ୍ତର ବିହାର ଓ ଓଡ଼ିଶାରେ ୧୧ଶରୁ ୧୪ଶ ଶତାବ୍ଦୀ ମଧ୍ୟରେ ମୂଳ ବ୍ରାହ୍ମୀ ଲିପିର ଏକପ୍ରକାର କ୍ରମ-ବିବର୍ତ୍ତିତ ରୂପ ପ୍ରଚଳିତ ଥିଲା, ତାହାକୁ ବ୍ୟୁଲର 'Proto Bengali' ନାମରେ ଅଭିହିତ କରିଛନ୍ତି । ଆଧୁନିକ ବଙ୍ଗଳା ଓ ଅସମୀୟା ଲିପି ଏଥିରୁ ହିଁ ବିକଶିତ । ମୈଥିଳୀ ଓ ଓଡ଼ିଆ ଲିପିର ଏହା ମଧ୍ୟ ଭିତ୍ତି । ଏହି କାରଣରୁ ବଙ୍ଗୀୟ ଆଲୋଚକ ରାଖାଲଦାସ ବାନାର୍ଜୀ ମତ ଦେଇଛନ୍ତି ଯେ "In the South the Bengali Script was used throughout Orissa X X X The Modern Cursive Oriya Script was developed out of the Bengali after the 15th century A. D. like the Modern Assamese". (The Origin of the Bengali script 1919)

କିନ୍ତୁ ଡ଼ଃ ବାନାର୍ଜୀଙ୍କ ଉକ୍ତିରେ ବଙ୍ଗଳା ଓ ପ୍ରତ୍ନ ବଙ୍ଗଳାର ଆକ୍ଷରିକ ଓ ଲାକ୍ଷଣିକ ଅର୍ଥ ସମନ୍ୱିତ ହୋଇଯାଉଥିବାରୁ ଅନେକ ଭ୍ରାନ୍ତିର ଅବକାଶ ରହିଯାଏ ଏବଂ କେତେକ ଉତ୍କଳୀୟ ଆଲୋଚକ ଅନୁରୂପ ଅଭିମାନ ପ୍ରକାଶ କରି ପ୍ରତ୍ନ-ବଙ୍ଗଳା ପ୍ରତିବଦଳରେ ପ୍ରତ୍ନ-ଓଡ଼ିଆ

ସଂଜ୍ଞା ପ୍ରୟୋଗ କରିବାର ପକ୍ଷପାତୀ ହୋଇଥାନ୍ତି । ବସ୍ତୁତଃ ଓଡ଼ିଆ ଲିପି ବ୍ୟୁଲରଙ୍କ 'Proto-Bengali' ସହିତ ସଂପୃକ୍ତ; ମାତ୍ର ବଙ୍ଗଳା ଲିପିରୁ ୧୪ଶ ଶତାବ୍ଦୀ ପରେ ଉଦ୍ଭୂତ ହୋଇନାହିଁ । ଆନୁମାନିକ ଭାବେ ୧୦ମ ଶତାବ୍ଦୀ ବେଳକୁ ପ୍ରତ୍ନ-ବଙ୍ଗଳା ଲିପି ଜନ୍ମନେଲା ପରଠାରୁ ଓଡ଼ିଶା ଓ ବଙ୍ଗଳାରେ ଦୁଇ ସ୍ୱତନ୍ତ୍ର ମାର୍ଗରେ ଏହାର କ୍ରମିକ ବିକାଶ ସଙ୍ଘଟିତ ହୋଇଥିଲା । ଓଡ଼ିଶାରେ ଏହା ନାଗରୀ, ଦକ୍ଷିଣ-ନାଗରୀ (ଉତ୍ତରକାଳୀନ କଳିଙ୍ଗ ଲିପି) ଓ ତାମିଳ-ତେଲୁଗୁ ଦ୍ୱାରା ପ୍ରଭାବିତ ହୋଇଥିଲା । ଫଳରେ ଓଡ଼ିଶା ପ୍ରାନ୍ତର ପ୍ରତ୍ନ-ବଙ୍ଗଳା ଲିପିରେ ବଙ୍ଗଳା ଲିପିଠାରୁ କେତେକ ସ୍ୱାତନ୍ତ୍ର୍ୟ ପ୍ରାରମ୍ଭରୁ ପ୍ରକାଶ ପାଇଥିଲା । ତୁଳନାତ୍ମକ ଭାବେ ଦେଖିଲେ ଶୀର୍ଷଦେଶରେ ସମାନ୍ତରାଳ ରେଖା ବଙ୍ଗଳାରେ ରହିଲା; ମାତ୍ର ଓଡ଼ିଶାରେ ତାହା ବର୍ତ୍ତୁଳାକୃତି ଧାରଣ କଲା । କେତେକ ଅକ୍ଷର ବଙ୍ଗଳାରେ କୋଣଯୁକ୍ତ ହୋଇଗଲା; ମାତ୍ର ଓଡ଼ିଶାରେ କୁଣ୍ଠିକାକୃତି ଭାବରେ ରହିଗଲା; କେତେକ ଅକ୍ଷରର ଶୀର୍ଷଦେଶର ବାମ ଭାଗରେ ରହୁଥିବା କ୍ଷୁଦ୍ର ତ୍ରିଭୁଜ ଓ ପୁଚ୍ଛ ('Nepalese Hook'—Buhler) ବଙ୍ଗଳାରେ ପରିତ୍ୟକ୍ତ ହୋଇଥିଲେହେଁ ଓଡ଼ିଶାର ପ୍ରାଚୀନ ଅଭିଲେଖରେ ବ୍ୟବହୃତ ହୋଇଥିଲା ।

(ଦ୍ରଷ୍ଟବ୍ୟ : ନରସିଂହ ଦ୍ୱିତୀୟଙ୍କ କେନ୍ଦୁପାଟଣା ଅଭିଲେଖ, ଖ୍ରୀ: ୧୨୯୭)

ସର୍ବୋପରି ଓଡ଼ିଶାର ଲିପିରେ ନାଗରୀ ଓ ଦକ୍ଷିଣୀ ଲିପିର କେତେକ ଅକ୍ଷର ଗୃହୀତ ହୋଇଥିଲା । ଏହି ସବୁ ଦୃଷ୍ଟିରୁ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ ଯଥାର୍ଥରେ କହିଛନ୍ତି ଯେ, 'The Oriya script is more akin to Proto-Bengali than to modern Bengali."

(Evolution of Oriya Language and Script, 1962).

ଓଡ଼ିଶାରେ ନାଗରୀ ଲିପିର ପ୍ରଚଳନ ମୁଖ୍ୟତଃ ୭ମ-୮ମ ଶତାବ୍ଦୀରୁ ଲକ୍ଷ୍ୟ କରାଯାଏ । ତତ୍କାଳୀନ ଶୈଳୋଦ୍ଭବବଂଶୀ, ସୋମବଂଶୀ, ପାଣ୍ଡୁବଂଶୀ ଶାସକଗଣ ଯଜ୍ଞାନୁଷ୍ଠାନ ଓ ରାଜ୍ୟଶାସନ ନିମନ୍ତେ ଉତ୍ତର-ଭାରତୀୟ ବ୍ରାହ୍ମଣମାନଙ୍କୁ ବହୁସଂଖ୍ୟାରେ

ନିଯୁକ୍ତ କରିଥିଲେ । ମନେହୁଏ, ଓଡ଼ିଶାରେ ନାଗରୀ ଲିପିର ପ୍ରବର୍ତ୍ତନ ମୂଳରେ ଏହା ଏକ ପ୍ରଧାନ କାରଣ । କୌଣସି ଗୋଟିଏ ଅଭିଲେଖରେ ପ୍ରୋଟୋ-ବଙ୍ଗଳା ଓ ନାଗରୀ ଲିପିର ମିଶ୍ରିତ ପ୍ରୟୋଗ ଏବଂ କୌଣସି ଜଣେ ରାଜାଙ୍କର ଅନୁଶାସନରେ ସ୍ଥାନଭେଦରେ ଉଭୟ ଲିପିର ବ୍ୟବହାର ବିଚାର କଲେ ଓଡ଼ିଶାରେ ନାଗରୀ ଲିପିର ପ୍ରଭାବ ଓ ପ୍ରତିଷ୍ଠାର ସ୍ୱରୂପ ସ୍ପଷ୍ଟ ଉପଲବ୍ଧି ହୁଏ । ଡଃ କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ଦ୍ୱାରା ନିର୍ଣ୍ଣୀତ ପ୍ରଥମ ଓଡ଼ିଆ ଅଭିଲେଖ—ବଜ୍ରହସ୍ତ ଦେବ ୨ୟଙ୍କ ଉରଜାମ ଅଭିଲେଖ (ଖ୍ରୀ: ୧୦୫୧)ର ଲିପି ଦକ୍ଷିଣ-ନାଗରୀ । ଓଡ଼ିଶାରେ ପ୍ରଥମ ପର୍ଯ୍ୟାୟରେ ଏହି ଦକ୍ଷିଣ-ନାଗରୀ ଲିପିର ବ୍ୟାପକ ବ୍ୟବହାର ପରିଦୃଷ୍ଟ ହୁଏ; ମାତ୍ର ଖ୍ରୀ: ୧୪୦୩ ରେ ଖୋଦିତ ଶ୍ରୀ କୂର୍ମେଶ୍ୱର ମନ୍ଦିର ଅଭିଲେଖର ଲିପି ଆଧୁନିକ ଦେବନାଗରୀ ସଙ୍ଗେ ସମାନ । ଓଡ଼ିଆ ଭାଷାର ଧ୍ୱନି-ପ୍ରକ୍ରିୟା ଏବଂ ଓଡ଼ିଶାର ବିଶିଷ୍ଟ ଲିଖନ-ପଦ୍ଧତି ପ୍ରତି ଦୃଷ୍ଟିଦେଇ ଓଡ଼ିଶାରେ ପ୍ରଚଳିତ ନାଗରୀ ଲିପିର ଯେପରି ସଂସ୍କାର ବିଧାନ କରାଯାଇଛି ତାହା ବାସ୍ତବରେ କୌତୂହଳପ୍ରଦ । ଦୃଷ୍ଟାନ୍ତ ସ୍ୱରୂପ ଏହାର କିଛି ନମୁନା ପ୍ରଦତ୍ତ ହେଲା ।

(୧) ଓଡ଼ିଆ ଭାଷାରେ ଲ-ଳ ଭେଦ ପ୍ରକାଶ ପାଇଁ 'ଲ' ସ୍ଥାନରେ ନାଗରୀ 'ल'ରେ ଗୋଟିଏ ପୁଚ୍ଛ ସଂଯୋଜନ କରାଯାଇଛି (ल्) ଏବଂ 'ଳ' ସ୍ଥାନରେ ନାଗରୀ ' ' ଅବିକଳ ବ୍ୟବହାର କରାଯାଇଛି ।

(୨) ଓଡ଼ିଆରେ ଜ-ଯ ମଧ୍ୟରେ ଭେଦ ନଥିବାରୁ ନାଗରୀ 'य' ଓଡ଼ିଆ 'ଜ' ସ୍ଥାନରେ ବ୍ୟବହୃତ ହୋଇଛି ଏବଂ ଓଡ଼ିଆ 'ୟ' ସ୍ଥାନରେ ପୁଚ୍ଛଯୁକ୍ତ ନାଗରୀ (य्) ବ୍ୟବହୃତ ହୋଇଛି ।

(୩) ଓଡ଼ିଆରେ ବର୍ଗ୍ୟ ଓ ଅବର୍ଗ୍ୟ 'ବ'ର ଉଚ୍ଚାରଣ ସମାନ ହୋଇଥିବାରୁ ନାଗରୀ ଅବର୍ଗ୍ୟ 'ब'ର ସ୍ୱାତନ୍ତ୍ର୍ୟ ପ୍ରକାଶ ପାଇଁ ବିନ୍ଦୁଯୁକ୍ତ ଭାବେ (ब०) ବ୍ୟବହୃତ ହୋଇଛି ।

(୪) ଓଡ଼ିଆରେ 'ଷ'ର ଉଚ୍ଚାରଣ 'ଖ' ପ୍ରଧାନ ହେଉଥିବାରୁ ଓଡ଼ିଆ 'ଖ' ସ୍ଥାନରେ ନାଗରୀ 'ष'ର ବ୍ୟବହାର ହୋଇଛି; ଯଥା- 'ଲେଖଇ' ସ୍ଥଳେ 'ଲେଷଇ'।

(୫) ନାଗରୀ ଲିପିରେ କ୍ୱଚିତ୍ ଓଡ଼ିଆ ପଦ୍ଧତିରେ ମାତ୍ରାବିନ୍ୟାସ କରାଯାଇଛି; ଯଥା—**देव** ସ୍ଥଳେ **देव**।

ଓଡ଼ିଆ ଲିପିର କ୍ରମବିକାଶ ପଥରେ ନାଗରୀ ଲିପିର ପ୍ରଭାବ ଅନସ୍ୱୀକାର୍ଯ୍ୟ। କେତୋଟି ଓଡ଼ିଆ ଅକ୍ଷରର ନାଗରୀ ଅକ୍ଷର ସହିତ ଏପରି ସାଦୃଶ୍ୟ ରହିଛି ଯେ ଶୀର୍ଷଦେଶର ମୁଣ୍ଡଳୀ ପରିବର୍ତ୍ତେ ରେଖା ଟାଣିଦେଲେ ସେସବୁ ସହଜରେ ନାଗରୀ ବୋଲି ନିର୍ଣ୍ଣୀତ ହୋଇଯିବ। ଗ୍ରୀଏରସନ ଉଭୟ ଲିପି ମଧ୍ୟରେ ଏତାଦୃଶ ଆକୃତିଗତ ସମତା ଲକ୍ଷ୍ୟକରି ଏବଂ କେତେକ ଐତିହାସିକ ତଥ୍ୟ ଉପରେ ନିର୍ଭରକରି ମତ ଦେଇଥିଲେ ଯେ, "The Maithili and Bengali alphabets are derived from Buhler's Proto-Bengaii. The Oriya alphabet is on the contrary derived from Nagari and probably reached Orissa directly from the West." (Indian Antiquary, Supplement, 1932)

## ଉପସଂହାର—

ଶେଷରେ ଉପରୋକ୍ତ ଆଲୋଚନା ଭିତ୍ତିରେ ପୁଣି ଥରେ ସୂଚାଇଦେବା ଉଚିତ ଯେ ଓଡ଼ିଆ ଲିପି ତାମିଳ-ତେଲୁଗୁ, ବଙ୍ଗଳା ବା ନାଗରୀ କୌଣସି ଗୋଟିଏ ଲିପିରୁ ସୃଷ୍ଟି ହୋଇନାହିଁ। ଖ୍ରୀ: ପୂ: ୩ୟ ଶତକରୁ ଆରମ୍ଭ କରି ଊନବିଂଶ ଶତାବ୍ଦୀରେ ମୁଦ୍ରାଯନ୍ତ୍ରର ପ୍ରତିଷ୍ଠାକାଳ ପର୍ଯ୍ୟନ୍ତ ଓଡ଼ିଆଲିପି ବିଭିନ୍ନ ପର୍ଯ୍ୟାୟରେ ବିଭିନ୍ନ ପ୍ରଭାବର ବଶବର୍ତ୍ତୀ ହୋଇ ତାହାର ବର୍ତ୍ତମାନ ସ୍ୱରୂପ ଲାଭକରିଛି। ବ୍ରାହ୍ମୀଲିପିରୁ ଗୁପ୍ତ, କୁଟିଳ ଓ ପ୍ରୋଟୋ-ବଙ୍ଗଳା ଲିପିମଧ୍ୟ ଦେଇ ତାମିଲ ଗ୍ରନ୍ଥଲିପି ଓ ନାଗରୀଲିପି ପ୍ରଭାବରେ ଓଡ଼ିଆ ଲିପିର ସୃଷ୍ଟି ଓ ବିକାଶ ଘଟିଛି।

ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ, ତିବ୍ବତୀୟ ଧର୍ମଶାସ୍ତ୍ରରେ 'ଓ୍ୱାର୍ତ୍ତୁ' ନାମକ ଏକ ଲିପି ବ୍ୟବହୃତ ହୋଇଥିବାର ଦେଖାଯାଏ ।

(ଦ୍ରଷ୍ଟବ୍ୟ : ଓଡ଼ିଆ ଲିପି ଓ ଭାଷା—ଖଗେଶ୍ୱର ମହାପାତ୍ର, ୧୯୮୦)

ଏହା ଏକ ଭାରତୀୟ ଲିପି । ପ୍ରାଚୀନ ଓଡ଼ିଆ ଲିପି ସହିତ ଏହାର ସାଦୃଶ୍ୟ ଏତେ ପରିମାଣରେ ପରିଲକ୍ଷିତ ହୁଏ ଯେ, ଏହା ଓଡ଼ିଆ ଲିପିର ଏକପ୍ରକାର ରୂପାନ୍ତର ବୋଲି ଧାରଣା ହୁଏ । ଏକଦା ଧର୍ମ ପ୍ରସଙ୍ଗରେ ଓଡ଼ିଆ ଓ ତିବ୍ବତ ମଧ୍ୟରେ ଘନିଷ୍ଠ ସଂଯୋଗ ଘଟିଥିବାରୁ ଓଡ଼ିଆ ଓ ଓ୍ୱାର୍ତ୍ତୁ ମଧ୍ୟରେ ସମ୍ପର୍କ ନିର୍ଦ୍ଧାରଣ ଅବଶ୍ୟ ହେଲାର ବିଷୟ ହୋଇନପାରେ । ଏହି ସୂତ୍ରରେ ମଧ୍ୟ ଓଡ଼ିଆ ଲିପିର ଐତିହାସିକ ବିକାଶ କ୍ରମ ଉପରେ ଯଥେଷ୍ଟ ଆଲୋକପାତ ହୋଇପାରେ; ଯେଉଁଥିରୁକି ପ୍ରତି-ପାଦିତ ହୋଇପାରେ ଯେ ବ୍ୟୁଲର୍‌ଙ୍କ ପ୍ରୋଟୋ-ବଙ୍ଗଳା ସହିତ ବଙ୍ଗଳା ନା ଓଡ଼ିଆ କେଉଁ ଲିପିର ଆନ୍ତରିକ ସଂଯୋଗ କେତେ ବେଶୀ ?



# ଓଡ଼ିଆ ପୋଥି ସମ୍ପାଦନା :
# ସମସ୍ୟା ଓ ସମାଧାନ

**ନୀଳମଣି ମିଶ୍ର**

ଓଡ଼ିଆ ଭାଷା ଓ ସାହିତ୍ୟର ଶ୍ରୀବୃଦ୍ଧି ପାଇଁ ଆମ ଦେଶରେ ଶହ ଶହ ନୁହେଁ, ହଜାର ହଜାର ତାଳପତ୍ର ପୋଥି ଲେଖାଯାଇଛି । ସେସବୁ ତାଳପତ୍ର ଗଦା ଭିତରେ କେତେ ଯେ କାବ୍ୟ, ମହାକାବ୍ୟ, ଖଣ୍ଡକାବ୍ୟ, ଗୀତକାବ୍ୟ ଓ ପୁରାଣ ଆଦି ଲୁଚି ରହିଛି, ତା'ର କଳନା ଆଜଯାଏ ଆମ ଗବେଷଣାରତ ଛାତ୍ରଛାତ୍ରୀମାନେ ପାଇପାରି ନାହାନ୍ତି । ଭାରତବର୍ଷର ପ୍ରାୟ ସମସ୍ତ ରାଜ୍ୟରେ ପାଣ୍ଡୁଲିପି ସର୍ବେକ୍ଷଣ ଶେଷ ହୋଇ ସାରିଥିବାବେଳେ, ଆମ ରାଜ୍ୟରେ କାଣିଚୁଏ ସୁଦ୍ଧା ହୋଇ ନାହିଁ । Rev. J. Long ଖ୍ରୀଷ୍ଟାବ୍ଦ ୧୮୫୯ ଯେଉଁ ଉଦ୍ୟମ ଓଡ଼ିଆ ପୋଥିଗୁଡ଼ିକର ଅନୁସନ୍ଧାନ ପାଇଁ କରିଥିଲେ, ତା'ଠାରୁ ଆଉ କେଇ ପାହାଣ୍ଡ ମାତ୍ର ଆମ ଗବେଷକମାନେ ଅଗ୍ରଗତି କରିଛନ୍ତି କି ନାହିଁ ସନ୍ଦେହ ।

୧୯୧୭ ରେ ପଣ୍ଡିତ ହରପ୍ରସାଦ ଶାସ୍ତ୍ରୀ ଓ ପ୍ରଫେସର ମ୍ୟାକ୍‌ଡୋନାଲ୍‌ଡ଼ ଯେଉଁ ତାଳପତ୍ର ସର୍ବେକ୍ଷଣ ପୁରୀଜିଲ୍ଲାର ଶାସନ ଓ ମଠବାଡ଼-ମାନଙ୍କରେ କରିଥିଲେ, ତା'ର ଚଉହଦି ସୁଦ୍ଧା ଆମେ ସ୍ପର୍ଶ କରିବାକୁ ଆଜଯାଏଁ ସମର୍ଥ ହୋଇ ନଥାଇଁ ।

ଓଡ଼ିଆ ସାହିତ୍ୟର ପ୍ରଥମ ସମାଲୋଚକ ସ୍ୱର୍ଗତଃ ଆର୍ତ୍ତବଲ୍ଲଭ ମହାନ୍ତି ନିଜର ମୁଷ୍ଟିମେୟ ଛାତ୍ରଙ୍କ ଜରିଆରେ ଯେଉଁ ତାଳପତ୍ର ପୋଥି ସଂଗ୍ରହ ଓ ସେଗୁଡ଼ିକର ସମ୍ପାଦନା କରିଥିଲେ, ସେଥିରେ ଉଦ୍‌ବୁଦ୍ଧ ହୋଇ, ଡ଼କ୍ଟର କରୁଣାକର କର, ବଚ୍ଛନ୍ଦଚରଣ ପଟ୍ଟନାୟକ ତଥା

ଡକ୍ଟର୍ କୃଷ୍ଣଚନ୍ଦ୍ର ତ୍ରିପାଠୀ ଓ ସର୍ବଶେଷରେ ଐତିହାସିକ କେଦାରନାଥ ମହାପାତ୍ର ପାଣ୍ଡୁଲିପି ସଂଗ୍ରହ ଓ ସମ୍ପାଦନାରେ ମନ ବଳାଇ ଥିଲେ । ସ୍ୱର୍ଗତଃ କେଦାରନାଥ ରାଜ୍ୟ ସଂଗ୍ରହାଳୟରେ ଗୋଟିଏ ତାଳପତ୍ର ପୋଥି ବିଭାଗ ପ୍ରତିଷ୍ଠା କରିଥିଲେ । ସେଥିରେ ତାଙ୍କୁ ବିଶେଷ ଭାବରେ ଉତ୍ସାହିତ କରିଥିଲେ ସ୍ୱର୍ଗତଃ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ ।

ତାଳପତ୍ର ପୋଥିରୁ ପାଠ ସଂଗ୍ରହ କରି ପୁସ୍ତକ ସମ୍ପାଦନାର ବିଧିବଦ୍ଧ ଯୋଜନା ଆରମ୍ଭ କରିଥିଲେ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି । ପ୍ରଥମେ ସେ 'ପ୍ରାଚୀ ସମିତି' ମାଧ୍ୟମରେ ଯେଉଁ କାର୍ଯ୍ୟର ଅଯୂମାରମ୍ଭ କରିଥିଲେ, ତା'ର ପୂର୍ଣ୍ଣାଙ୍ଗରୂପ ଦେଇଥିଲେ ସାରଳା ଦାସଙ୍କ 'ମହାଭାରତ'ର ସମ୍ପାଦନାରେ । ଦୁର୍ଭାଗ୍ୟବଶତଃ ସେ କାର୍ଯ୍ୟ ଶେଷ କରିବା ପୂର୍ବରୁ ସେ ଇହଧାମରୁ ବିଦାୟ ନେଲେ । ତା'ପରେ 'ମହାଭାରତ'ର ସମ୍ପାଦନାରେ ଯେଉଁ ଦୁର୍ବିପାକ ଘଟିଲା, ଓଡ଼ିଶାର ପାଠକପାଠିକାମାନେ ଊଣାଅଧିକେ ତାହା ଜାଣନ୍ତି । ସ୍ୱର୍ଗତଃ ଆର୍ତ୍ତବାବୁ ପନ୍ଦର କୋଡ଼ିଏ ଖଣ୍ଡି ବିଭିନ୍ନ ଅଞ୍ଚଳରୁ ସଂଗୃହୀତ ତାଳପତ୍ର ପୋଥିରୁ ପାଠ ସଂଗ୍ରହ କରି ଗୋଟିଏ ଶୁଦ୍ଧପାଠ ବାହାର କରୁଥିଲେ ।

ଠିକ୍ ଏହି ଧରଣର ସମ୍ପାଦନା କାର୍ଯ୍ୟ ପୁନାର 'ବୈଦିକ ସଂଶୋଧନମଣ୍ଡଳ', ଭଣ୍ଡାରକର ରିସର୍ଚ୍ଚ ଇନଷ୍ଟିଚ୍ୟୁଟ୍ ଓ ବରୋଦାର 'ମହାରାଜା ଶୟାଜୀରାଓ ଗବେଷଣା ପ୍ରତିଷ୍ଠାନ'ରେ ଅଦ୍ୟାପି ସମ୍ପାଦିତ ହେଉଛି । ବିଭିନ୍ନ ଅଞ୍ଚଳରୁ ପାଣ୍ଡୁଲିପି ସଂଗ୍ରହ କରା ନଗଲେ, ଗୋଟିଏ ଶୁଦ୍ଧପାଠ ଖୋଜି ବାହାର କରିବା ଆଦୌ ସହଜ ନୁହେ । ସେଥିପାଇଁ ଉପରୋକ୍ତ ଅନୁଷ୍ଠାନଗୁଡ଼ିକ ଆମ ରାଜ୍ୟରୁ ଓଡ଼ିଆ ଲିପିରେ ଲେଖା ଯାଇଥିବା ସଂସ୍କୃତ ପାଣ୍ଡୁଲିପି ମଧ୍ୟ ସଂଗ୍ରହ କରୁଥିଲେ ।

ସଂସ୍କୃତ ଗ୍ରନ୍ଥଗୁଡ଼ିକରୁ ଶୁଦ୍ଧ ପାଠୋଦ୍ଧାର କରିବା ଖୁବ୍ ଆୟାସସାଧ୍ୟ କାର୍ଯ୍ୟ ନୁହେ । କାରଣ ଅଶ୍ୱଘୋଷଙ୍କଠାରୁ ଆରମ୍ଭ କରି, ଊନବିଂଶ ଶତାବ୍ଦୀରେ ଲିଖିତ ସଂସ୍କୃତ ଗ୍ରନ୍ଥଗୁଡ଼ିକ ଏକ ନିର୍ଦ୍ଦିଷ୍ଟ

ବ୍ୟାକରଣ, ଛନ୍ଦ ଓ ଅଳଙ୍କାର ନିୟମରେ ଲିଖିତ ହୋଇଛି । କେବଳ ଲିପିକାରମାନେ ପୁନର୍ଲେଖନ ସମୟରେ ନିଜର ଅଜ୍ଞତାବଶତଃ ହେଉ କିମ୍ବା ପାଣ୍ଡିତ୍ୟ ପ୍ରକାଶ ପାଇଁ ହେଉ, ଯେଉଁ ଭ୍ରମପ୍ରମାଦମାନ କରିଥାଆନ୍ତି, ତାହା ସହଜରେ ଜଣାପଡ଼ିଯାଏ । ଆଜି ମଧ୍ୟ ଯେଉଁ ବିଦ୍ୱାନ୍‌ମାନେ ‘ଅକ୍ଷରମାଳମ୍ମା କୀର୍ତ୍ତି’ ରଖିବା ପାଇଁ ଆଗ୍ରହ ପ୍ରକାଶ କରୁଥିଲେ, ସେମାନେ ମଧ୍ୟ କେତେକ ଶ୍ଳୋକ ନିଜେ ରଚନା କରି ପୋଥିରେ ଯୋଡ଼ି ଦେଉଥିଲେ । କିନ୍ତୁ ତାହା ମୂଳ ଲେଖକଙ୍କ ରଚନା ସହିତ ଆଦୌ ମେଳ ହୋଇପାରେ ନାହିଁ । ବିଶେଷତଃ ସଂସ୍କୃତରେ ଶବ୍ଦ ଯୋଜନାର ଯେଉଁ ଶୈଳୀ ରହିଛି, ତାହା ଚେଷ୍ଟା କଲେ ମଧ୍ୟ ଦୁଇଜଣ କବିଙ୍କର ସମାନ ହୋଇପାରିବ ନାହିଁ । ଉଦାହରଣ ସ୍ୱରୂପ ମହାକବି ଜୟଦେବଙ୍କ ‘ଗୀତଗୋବିନ୍ଦ’କୁ ନିଆଯାଇପାରେ ।

ଗୀତଗୋବିନ୍ଦରେ ଚବିଶଟି ‘ଗାଥା’ ଓ ବାସ୍ତୋରୀଟି ଶ୍ଳୋକଥିବାର ଆମ ଉତ୍କଳୀୟ ପରମ୍ପରା ରହିଛି । କିନ୍ତୁ ଏହି ପରମ୍ପରାକୁ ଉଲ୍ଲଂଘନ କରି, ଗୀତଗୋବିନ୍ଦରେ ଯେଉଁ ଅଧିକ ଶ୍ଳୋକ ରହିଛି, ସେଗୁଡ଼ିକ ପ୍ରକ୍ଷିପ୍ତ ଜଣା ପଡ଼ୁଛନ୍ତି ।

ଅଭିନବ ଗୀତଗୋବିନ୍ଦ, ଗୀତମୁକୁନ୍ଦ, ଗୀତଗିରିଶ, ଗୀତଗୌରୀପତି, ଗୀତ ସୀତାବଲ୍ଲଭ ପ୍ରଭୃତି ବହୁ ଗୀତକାବ୍ୟ ସଂସ୍କୃତ କବିମାନେ ରଚନା କଲେ, କିନ୍ତୁ କେହି ଜଣେ ହେଲେ ‘ଗୀତଗୋବିନ୍ଦ’ର ସମକକ୍ଷ ହୋଇପାରିଲେ ନାହିଁ । ଠିକ୍ ସେହିପରି ସଂସ୍କୃତର ଅନ୍ୟାନ୍ୟ କାବ୍ୟକବିତା । ସେଗୁଡ଼ିକରୁ ପ୍ରକ୍ଷିପ୍ତ ଅଂଶ ସହଜରେ ଖୋଜି ବାହାର କରି ହେବ ।

ଆମ ଓଡ଼ିଆ ସାହିତ୍ୟ ବିଷୟ ସ୍ୱତନ୍ତ୍ର ଭାବରେ ବିଚାରକୁ ନିଆଯିବ । ସାରଳାଦାସଙ୍କ ମହାଭାରତର ଯେଉଁ ପ୍ରକ୍ଷିପ୍ତ ଅଂଶ ସମାଲୋଚକ ଆଙ୍ଗିବାକୁ ଦେଖାଇଛନ୍ତି, ସେ ପଦଗୁଡ଼ିକ ବେଳେବେଳେ ମନରେ

ପ୍ରଶ୍ନବାଚୀ ହୋଇଥାଏ । ଉଦାହରଣ ସ୍ୱରୂପ 'ଆଦିପର୍ବ'ର 'ସାରଳାଦେଶୀ ବନ୍ଦନା'ର ଶେଷପାଦ—

'ଫିଟିବାକ ପାତକ ସବୁ ଦୁଷ୍କୃତ ମାନେ' ।

(ମୂଳପାଠ)

ଫିଟିବାକ ପାତକ ଶୁଣନ୍ତେ ଯେତେକମନେ ।

(ପାଦଟୀକା)

(ମହାଭାରତ, ଆଦିପର୍ବ— ପୃ-୫)

ଆଦି ଦିଗପାଳମାନନ୍ତ ସେ ବରିଲା ସବୁନ୍ତି ।

(ମୂଳପାଠ)

ସୟଂବରେ ଦିଗପାଳମାନନ୍ତ
ସେ ବରିଲା ସବୁନ୍ତି ।

(ପାଦଟୀକା)

(ମ: ଭା: ଆ: ପୃ—୧୨)

ଏପରି ଅନେକ ପାଠ ମନରେ ସନ୍ଦେହ ଜାତ କରାଏ । କିନ୍ତୁ ସମ୍ପାଦକ ବିଭିନ୍ନ ପୋଥିର ପାଠ ପାଦଟୀକାରେ ସନ୍ନିବେଶ କରିଥିଲେ, ଅନେକ ପରିମାଣରେ ସନ୍ଦେହ ଦୂର ହୋଇପାରନ୍ତା ।

'ଜଗମୋହନ ରାମାୟଣ'ର ବହୁ ପୋଥି ରାଜ୍ୟ ସଂଗ୍ରହାଳୟର ପୋଥି ଭଣ୍ଡାରରେ ସଂରକ୍ଷିତ ହୋଇଛି । ପ୍ରତ୍ୟେକ ପୋଥିର ପାଠଠାରୁ ଅନ୍ୟ ପୋଥିର ପାଠରେ ବହୁ ଭେଦ ଥିବାର ପରିଲକ୍ଷିତ ହୁଏ । 'ଦକ୍ଷିଣୀ ରାମାୟଣ' ଶୀର୍ଷକ ଯେଉଁ ପୋଥିଟି ମୁଦ୍ରିତ ହୋଇଛି, ତାହାକୁ ପଢ଼ିଲେ ଧାରଣା ହୁଏ—ଏ' ପାଠ ଓ ଏତେ ପାଠ ଆସିଲା କୁଆଡ଼ୁ ?

ଅତଏବ ଜଗନ୍ନାଥ ଦାସଙ୍କ 'ଭାଗବତ' ସମ୍ପାଦନା କରିବା ବେଳେ ଯେତେଖଣ୍ଡି ପୋଥିର ସାହାଯ୍ୟ ନିଆଯାଇଛି, ସମସ୍ତ ପୋଥିର

ପାଠ ପାଦଟୀକାରେ ଦିଆଯାଇଛି । ସମ୍ପାଦକଙ୍କ ଦ୍ୱାରା ଯେଉଁ ପାଠଟି ମୂଳରେ ଗୃହୀତ ହୋଇଛି, ହୁଏତ ଅନ୍ୟ କେହି ବ୍ୟକ୍ତିଙ୍କ ବିଚାରରେ ଆଉ କେଉଁ ପାଠଟି ଉପଯୁକ୍ତ ବୋଲି ବିବେଚିତ ହୋଇପାରେ ! ଅବଶ୍ୟ ଭାଗବତର ପାଠ ଏତେ ପ୍ରାଞ୍ଜଳ ଯେ, ସେଥିରୁ ମଧ୍ୟ ସଂସ୍କୃତ ପର ପ୍ରକ୍ଷିପ୍ତ ଅଂଶ ବାହାର କରିବା ସହଜ ନହେଲେ ବି ଅସମ୍ଭବ ନୁହେ

ଓଡ଼ିଆ ସାହିତ୍ୟରେ ଏପରି କେଇଖଣ୍ଡ ବିଶିଷ୍ଟ ପୋଥି ରହିଛି, ଯେଉଁଥିରେ ବହୁସଂଖ୍ୟକ ପ୍ରକ୍ଷିପ୍ତ ଅଂଶ ରହିଥିବା ଆଦୌ ଅସ୍ୱାଭାବିକ ନୁହେ ।

ଆମ ପୋଥି ସଂରକ୍ଷଣର ଗୋଟିଏ ନିୟମ ଥିଲା—ଯେଉଁ ପୋଥିଟି ତିନିପୁରୁଷ ଅତୀତ ହୋଇଥିବ, ତାହାକୁ ଚତୁର୍ଥ ପୁରୁଷ ନକଲ କରିବା କରାଇ, ମୂଳ ପୋଥିଟିକୁ ଜଳଶାୟୀ କରାଇ ଦେବା । ଏପରି ଭାବରେ ନକଲ ହେଉଥିବା ବେଳେ ଲିପିକାର ବେଳେ ବେଳେ ଅଜ୍ଞତାବଶତଃ କେତେକ ପଦ ବୁଝି ନ ପାରି, ତା' ପରିବର୍ତ୍ତେ ନିଜ ଇଚ୍ଛା ଅନୁସାରେ ପଦ ବସାଇ ଦିଅନ୍ତି; ଅନ୍ୟ କେତେକ ବିଜ୍ଞ ତଥା ଭାବପ୍ରବଣ ଲିପିକାର ସ୍ଥଳବିଶେଷରେ ସଜ୍ଞାନରେ କେତୋଟି ପଦ ନିଜ ରଚନାରୁ ମିଶାଇ ଦିଅନ୍ତି । ସେପରିସ୍ଥଳେ ପ୍ରକ୍ଷିପ୍ତ ଅଂଶ ପୋଥିରୁ ବାହାର କରିବା ପ୍ରାୟ ଅସମ୍ଭବ ହୋଇପଡ଼େ ।

ଓଡ଼ିଆ ପୋଥିର ଦୁଇପ୍ରକାର ନକଲ ଥିବାର ପୋଥିପାଠରୁ ଅନୁମାନ କରାଯାଏ । କେତେକ ଓଡ଼ିଆ ପୋଥିର ନକଲକାର ହେଉଛନ୍ତି ସଂସ୍କୃତଜ୍ଞ ବିଦ୍ୱାନ୍ । ସେମାନେ ନକଲ କଲାବେଳେ ଓଡ଼ିଆ ପଦକୁ ସଂସ୍କୃତର ବ୍ୟାକରଣ କଷଟିରେ ପକାଇ ସଂଶୋଧନ କରି ଦେଇଥାନ୍ତି । ଉଦାହରଣ ସ୍ୱରୂପ: କେତୋଟି ପଦର ଉଲ୍ଲେଖ ଏଠାରେ କରାଯାଇପାରେ—

'ନିର୍ଗୁଣୀ→ନିର୍ଗୁଣ, ତ୍ରିଭଙ୍ଗୀ→ତ୍ରିଭଙ୍ଗ, ପ୍ରେହେର୍ଲେକ→ଏସନକ, ଆଧ୍ୟାନ→ଅଧ୍ୟୟନ, ସ୍ନାହାନ→ସ୍ନାହାନ, ଆଶ୍ରିଜ→ଆଶ୍ଚର୍ଯ୍ୟ'' । ତା'

ବ୍ୟକ୍ତିଗତ ନାମବାଚକ ଶବ୍ଦକୁ ଆଞ୍ଚଳିକ ଉଚ୍ଚାରଣ ପ୍ରତି ଦୃଷ୍ଟି ନଦେଇ ସଂସ୍କୃତଜ୍ଞ ଲିପିକାରମାନେ ପ୍ରଶୁରାମ, ବ୍ରିକେଦର, ଦ୍ରିଯୋଧନ, ଯୁଦ୍ଧେଷ୍ଟି ଶବ୍ଦକୁ ଜାଣିଶୁଣି ସଂଶୋଧନ କରିଦେଇଥା'ନ୍ତି ।

କେବଳ ଅକ୍ଷର ଜ୍ଞାନଥିବା ଲିପିକାରମାନେ ନିଜର ଅଜ୍ଞତା ବଳରେ ଯେଉଁ ପ୍ରମାଦ ପାଣ୍ଡୁଲିପିମାନଙ୍କରେ କରିଥା'ନ୍ତି, ତାକୁ ଅବଶ୍ୟ ବିଚାରକୁ ନଆଯାଏ ନାହିଁ । ସେମାନେ ମଧ୍ୟ ନିଜର ଅଜ୍ଞତା ପ୍ରତି ସଜାଗ ନ ହୋଇ ବେଳେବେଳେ ଯେଉଁ ପ୍ରମାଦ କରିବସନ୍ତି, ତାହା ସମ୍ପାଦକଙ୍କୁ ବହୁ ଅସୁବିଧାର ସମ୍ମୁଖୀନ କରାଇଥାଏ । ଉଦାହରଣ ସ୍ୱରୂପ—ଗୋଟିଏ ଘଟଣାର ଉଲ୍ଲେଖ ଏଠାରେ କରାଯାଇପାରେ ।

ପୋଥିପତ୍ରର ଗୋଟିଏ ପାଞ୍ଚ ଧାଡି ମଧ୍ୟରେ ଦ୍ୱିତୀୟ ଧାଡିର ଆରମ୍ଭରେ ଗୋଟିଏ 'ପତିତପାବନ' ଶବ୍ଦ ରହିଛି ଏବଂ ପଞ୍ଚମ ଧାଡ଼ିର ଆରମ୍ଭରେ ଆଉ ଗୋଟିଏ 'ପତିତପାବନ' ରହିଛି । ନକଲକାର ଦେବାତ୍ ପ୍ରଥମ ଧାଡିଟି ନକଲ ସାରିବା ପରେ, କୌଣସି କାରଣବଶତଃ ଲେଖନୀ ଚାଳନା ବନ୍ଦକରି, ପୁଣି ଲେଖିବା ବେଳେ ପଞ୍ଚମ ଧାଡିରେ ଥିବା 'ପତିତପାବନ'ଠାରୁ ଲେଖା ଆରମ୍ଭ କରିଦିଅନ୍ତି ଏବଂ ସେ ପୋଥିରୁ ଆଉ ଯେତେ ପୋଥି ନକଲ କରାଯାଇଛି, ସବୁ ପୋଥିରେ ତିନିଧାଡ଼ି ପାଠ ଦେଖିବାକୁ ମିଳେ ନାହିଁ । ଏହି ଏକାଧରଣର ପୋଥି ଦୁଇତିନି ଖଣ୍ଡ ମିଳିଗଲେ, ସମ୍ପାଦକଙ୍କର ମୁଣ୍ଡବ୍ୟଥା ବଢ଼ିଯାଏ ।

ଆଉ କେତେକ ନକଲକାର ଭାବପ୍ରବଣ ହୋଇ ବର୍ଣ୍ଣନୀୟ ବିଷୟ ସହିତ ଦୁଇଚାରିପଦ ନିଜ ରଚନା ମିଶାଇ ଦେଇ 'ମନ୍ଦକବିଯଶପ୍ରାର୍ଥୀ' ହୋଇଥା'ନ୍ତି ।

ଆଉ ଗୋଟିଏ ପ୍ରକାର ପ୍ରମାଦ ଆମ ପୋଥିର ଲେଖକକାରମାନଙ୍କ ଠାରେ ପରିଲକ୍ଷିତ ହୁଏ । ଉଦାହରଣ ସ୍ୱରୂପ ଭକ୍ତକବି ସାଲବେଗଙ୍କ 'ଆହେ ନୀଳଶଇଳ ପ୍ରବଳ ମତ୍ତବାରଣ'କୁ ନଆଯାଇପାରେ । 'ପ୍ରବଳ

ମତ୍ତବାରଣ’ ସ୍ଥାନରେ କେତେକ ପୋଥିରେ ‘ପ୍ରମତ୍ତମତ୍ତବାରଣ’ ରହିଛି । କେହି ହୁଏତ ‘ପ୍ରମତ୍ତ ମତ୍ତ’ ଶ୍ରୁତିସୁଖକର ହେବା ଉଦ୍ଦେଶ୍ୟରେ ଲେଖି ଥାଇପାରେ । କିନ୍ତୁ ଅର୍ଥସଙ୍ଗତ ଓ ଅନୁପ୍ରାସ (ଶବ୍ଦ ପ୍ରବଳ) ଦୃଷ୍ଟିରୁ ‘ପ୍ରବଳ ମତ୍ତବାରଣ’ ଯୁକ୍ତିସଙ୍ଗତ ।

ସେହିପରି ସାଲବେଗଙ୍କ ନାମରେ ଭଣିତ ‘ବାଟଚ୍ଛଡ଼ ସୁଘଟ ନାଗର’ ଚଉପଦୀଟିକୁ ନିଆଯାଇ ପାରେ । ଗୀତଟି ତାଳପତ୍ର ପୋଥିମାନଙ୍କରେ ସାଲବେଗ ନାମରେ ଭଣିତା ହୋଇଥିବା ସ୍ଥଳେ ଛାପାବହିରେ ବନମାଳୀଙ୍କ ନାମ ମିଳୁଛି । ଆଲୋଚନାର ସୌକର୍ଯ୍ୟ ଦୃଷ୍ଟିରୁ ଦୁଇଟିଯାକ ଭଣିତା ସମ୍ବଳିତ ଗୀତରୁ କିଛି ଅଂଶ ଉଦାହରଣ ରୂପେ ଏଠାରେ ଦିଆଯାଇପାରେ ।

‘ବାଟଚ୍ଛଡ଼ **ସୁହଟ** ନାଗର **ଯମୁନାକୁ ଯିବ ନୀର ଆଣିକି ।**
(ବନମାଳୀ)

ବାଟ ଛଡ଼ **ସୁଘଟ** ନାଗର **ଯମୁନାକୁ ମୁହିଁ ଯିବ ପାଣିକି** ।
( ସାଲବେଗ )

ଉପରୋକ୍ତ ପଦରେ ଥିବା ସୁହଟ ଓ ସୁଘଟ ଶବ୍ଦ ଦୁଇଟିକୁ ବିଚାର କଲେ ସୁହଟ ଅପେକ୍ଷା ସୁଘଟ ଶବ୍ଦ ପ୍ରୟୋଗ ଅଧିକ ଯୁକ୍ତିଯୁକ୍ତ ବୋଲି ମନେହୁଏ । ସୁହଟ ଶବ୍ଦ ଅଭିଧାନରେ ମିଳେ ନାହିଁ । ହଟ ଶବ୍ଦର ଅର୍ଥ ଜିଦ୍ । ତା’ପୂର୍ବରୁ ‘ସୁ’ ଲଗିବାରେ ଆଦୌ ଯୌକ୍ତିକତା ଥିବାର ମନେ ହୁଏ ନାହିଁ । ଏଭଳି ପ୍ରୟୋଗ କ୍ୱଚିତ୍ ସିନେମାର ‘ପତିବ୍ରତା ପାପୀ’ ବା ‘ପାପୀଦେବତା’ ଭଳି ଅବସ୍ଥାରେ ଭାବରେ ପ୍ରୟୋଗ କରାଯାଇଛି । ସୁଘଟର ଅର୍ଥ ସୁନ୍ଦର । ଏଠାରେ ମନମୋହନ ସୁନ୍ଦର ନାଗରଙ୍କଠାରେ ଛଳକୋପ ପ୍ରକାଶ କରିବା ଯେତେ ଯୁକ୍ତିଯୁକ୍ତ ସୁହଟ ନାଗର ଅର୍ଥାତ୍ ଜିଦ୍‌ଖୋର ନାଗର ନିକଟରେ ନାୟିକାର ଛଳକୋପ ସେପରି ରସବୋଧକ ହୁଅନ୍ତା ନାହିଁ ।

'ଘରେ ମୋ' ନଣନ୍ଦ ଅଟେ ବଡ଼ ମନ୍ଦ
ଶାଶୁ ମୋ' ଅଟଇ ସପତଣୀ କି' ।
( ବନମାଳୀ )

ଶ୍ରୀରାଧା ନିଜ ଶାଶୁଙ୍କ ଦ୍ୱାରା ସବୁବେଳେ ନିନ୍ଦିତା ହେଉଥିଲେ ହେଁ ତାଙ୍କୁ ସପତ୍ନୀ ସହିତ ତୁଳନା କରିବା ସାମାଜିକତା ଦୃଷ୍ଟିରୁ ଆଦୌ ସୁସ୍ଥ ପରମ୍ପରା ନୁହେଁ ।

କିନ୍ତୁ ସାଲବେଗଙ୍କ ନାମରେ ଭଣିତ ଗୀତରେ ଅଛି—

"ଶାଶୁ ଗାଳିଦେବ ନଣନ୍ଦ ଚଳିବ
ବୋଲିବେ ବୋହୂ ମୋ ଦୋଗୁରୁଣୀ କି" ।

'ଗାଳିଦେବ', 'ଚଳିବ' ଆଦି ଶବ୍ଦ କବି ଶ୍ରୀରାଧାଙ୍କ ମୁଖରେ ପ୍ରକାଶ କରିଛନ୍ତି । କାରଣ ଶାଶୁ ଓ ନଣନ୍ଦଙ୍କ ବ୍ୟବହାର ସେ ଅତ୍ୟନ୍ତ ଉଚ୍ଛନ୍ନ ହୋଇ ଉଠିଥିଲେ । ତେଣୁ ସେ ଦୁହିଁଙ୍କ ପ୍ରତି ଅସମ୍ମାନସୂଚକ ଶବ୍ଦ ପ୍ରୟୋଗ କରିବା ନାୟିକା ପକ୍ଷରେ ସ୍ୱଭାବୋକ୍ତି ବୋଲି ମନେହୁଏ । ଏହିପରି ଭାବରେ ଦେଖିବାକୁ ଗଲେ, କୌଣସି ଏକ ଚତୁର ବ୍ୟକ୍ତିଙ୍କ ପ୍ରଚେଷ୍ଟା ଫଳରେ ସାଲବେଗଙ୍କ ରଚନା ସାମାନ୍ୟ ପରିବର୍ତ୍ତିତ ହୋଇ ବନମାଳୀଙ୍କ ନାମରେ ଭଣିତା ହେବା ନିଶ୍ଚିତ ଭାବରେ ଉଦ୍ଦେଶ୍ୟମୂଳକ । ପୋଥିରୁ ଏ' ପ୍ରକାର ପ୍ରମାଣ ମିଳିବା ପରେ ଏ'ଭଳି ଗୀତର ସମ୍ପାଦନା ସମୟରେ ସମ୍ପାଦକଙ୍କ ଦାୟିତ୍ୱ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ବିଶେଷତଃ ଉଭୟ କବିଙ୍କ କାଳନିରୂପଣ କଲେ ପ୍ରାୟ ଶହେ ବର୍ଷ ପୂର୍ବର କବିଙ୍କ କବିତା ପ୍ରଚୁର ଅଭାବରୁ ପରବର୍ତ୍ତୀ କବିଙ୍କ ନାମରେ ଭଣିତା ହେବା ବିଚିତ୍ର ନୁହେଁ ।

ଏହି ପରିପ୍ରେକ୍ଷୀରେ ବିଚାର କଲେ ପୋଥି ସମ୍ପାଦନା ଏକ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ । ଏଥିପାଇଁ ବହୁ ସତର୍କତା ଅବଲମ୍ବନ ନକଲେ, କବିଙ୍କ ପ୍ରତି ନ୍ୟାୟବିଚାର କରିହେବ ନାହିଁ । ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ବିଷୟ

ହେଉଛି—ସମ୍ପାଦକ ତାଙ୍କ ମତରେ ଶୁଦ୍ଧପାଠ ଓ ଅଶୁଦ୍ଧ ପାଠ, ଉଭୟକୁ ପାଠକପାଠିକାଙ୍କ ଆଗରେ ଉପସ୍ଥାପନ କରିବା ।

ବଜାରରେ ମିଳୁଥିବା ମୁଦ୍ରିତ ପୁସ୍ତକମାନଙ୍କରେ ସମ୍ପାଦକ ଯେଉଁ ମନମୁଖୀ କାରବାର କରି ପାଠକ ସମାଜକୁ ବିଭ୍ରାନ୍ତ କରୁଛନ୍ତି, ବିଜ୍ଞ ଆଲୋଚକଙ୍କ ଦ୍ୱାରା ସମ୍ମିଳିତ ଭାବରେ ତା'ର ପ୍ରତିବାଦ କରାଯିବା ଏକାନ୍ତ ଆବଶ୍ୟକ ।

ଓଡ଼ିଆ ସାହିତ୍ୟର ବିଶାଳ ଭଣ୍ଡାରର ମଧ୍ୟରୁ ମୁଷ୍ଟିମେୟ କେତେ ପୁସ୍ତକକୁ ଛାଡ଼ିଦେଲେ ବହୁ କବିଙ୍କ ଅଜସ୍ର ପୁସ୍ତକ ସମ୍ପାଦିତ ନ ହୋଇ ବଜାରରେ ମିଳୁଛି । ତା' ଉପରେ ନିର୍ଭର କରି ଆଲୋଚକମାନେ ଆଲୋଚନାର ଋଜୁ ମାର୍ଗକୁ ଆହୁରି କୁଟିଳ କରିବାରେ ଲାଗିଛନ୍ତି !

ଏଥିପାଇଁ ଅବଶ୍ୟ ପ୍ରାରମ୍ଭିକ ସ୍ତରରେ ସାହିତ୍ୟ ଏକାଡ଼େମୀ କେତୋଟି ପୁସ୍ତକର ସମ୍ପାଦନା କରିଥିଲେ । ତାହା ପୁଣି ବନ୍ଦ ହୋଇଗଲା । ରାଜ୍ୟ ସଂସ୍କୃତି ବିଭାଗ ପକ୍ଷରୁ ଯେଉଁ ସମ୍ପାଦନା ବିଭାଗ ଖୋଲା ଯାଇଛି, ତା'ର ଗତି ଏତେ ମନ୍ଥର ଓ କାର୍ଯ୍ୟପନ୍ଥା ଏତେ ଜଟିଳ ଯେ, ସେଠାରୁ ସୁଫଳ ମିଳିବାର ଆଶା ଅତ୍ୟନ୍ତ କ୍ଷୀଣ ।

ଓଡ଼ିଶା ସାହିତ୍ୟ ଏକାଡ଼େମୀରେ ଗୋଟିଏ ସମ୍ପାଦନା ବିଭାଗ ସ୍ୱତନ୍ତ୍ର ଭାବରେ କାର୍ଯ୍ୟ କରିବା ଉଚିତ । ଓଡ଼ିଶାର ବିଜ୍ଞ ସମାଲୋଚକମାନଙ୍କୁ ନେଇ ସେଠାରେ ଓଡ଼ିଆ କାବ୍ୟ, କବିତା ଓ ପୁରାଣମାନଙ୍କର ସୁସମ୍ପାଦନା କରାଯିବା ଏକାନ୍ତ ଆବଶ୍ୟକ ।

ଏହା ବ୍ୟତୀତ ବିଶ୍ୱବିଦ୍ୟାଳୟମାନଙ୍କରେ ଯେଉଁ ବିଜ୍ଞବ୍ୟକ୍ତିମାନେ ଅଛନ୍ତି, ସେମାନଙ୍କୁ ନେଇ ଗୋଟିଏ ଗୋଟିଏ 'ସମ୍ପାଦନା' ବିଭାଗ ପ୍ରତ୍ୟେକ ବିଶ୍ୱବିଦ୍ୟାଳୟରେ ଖୋଲାଯିବା ଆବଶ୍ୟକ । ସେମାନେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ପୋଥି ସଂଗ୍ରହ କରିବା ସଙ୍ଗେ ସଙ୍ଗେ ଗ୍ରନ୍ଥଗୁଡ଼ିକୁ ସମ୍ମିଳିତ ଭାବେ ସମ୍ପାଦନ କରିବା ବିଧେୟ ।

ଅଦ୍ୟାପି ଓଡ଼ିଶାର ଉପାନ୍ତ ଅଞ୍ଚଳରେ ପାଣ୍ଡୁଲିପି ସର୍ବେକ୍ଷଣ କାର୍ଯ୍ୟ ହୋଇ ନାହିଁ । ପ୍ରତିବର୍ଷ ବନ୍ୟା, ଅଗ୍ନ୍ୟୁତ୍ପାତ ତଥା ଅବହେଳିତ ଅବସ୍ଥାରେ ଓଡ଼ିଶାର ବହୁ ଦୁର୍ଲ୍ଲଭ ପୁସ୍ତକ ଧ୍ୱଂସମୁଖରେ ପଡ଼ିବାରେ ଲାଗିଛି । ସେଗୁଡ଼ିକର ସଂଗ୍ରହ ଓ ନକଲ ସର୍ବାଦୌ ଆବଶ୍ୟକ । ତା'ସହିତ ସେଗୁଡ଼ିକର ସମ୍ପାଦନା ମଧ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ବୋଲି ମନେହୁଏ । ଏହା କେବେହେଲେ ସରକାରଙ୍କ 'ଲାଲଫିତା' ମାଧ୍ୟମରେ କୌଣସିମତେ ସମ୍ଭବ ନୁହେ । କେବଳ ସ୍ୱେଚ୍ଛାସେବୀ ସଂଗଠନ, ଏକାଡ଼େମୀ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ଏପରି ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ହୋଇପାରିବ । ବେଳହୁଁ ସାବଧାନ ନ ହେଲେ, ଆମ ପୂର୍ବପୁରୁଷଙ୍କ ଦ୍ୱାରା ଲିଖିତ ବହୁ ମୂଲ୍ୟବାନ୍ ଗ୍ରନ୍ଥ ଧ୍ୱଂସ ହୋଇଯିବ କିମ୍ବା ଦାୟିତ୍ୱହୀନ ପ୍ରକାଶକଙ୍କ ହାତରେ ନିଜର ମହତ୍ତ୍ୱ ହରାଇ ବସିବ, ଏଥିରେ ସନ୍ଦେହ ନାହିଁ ।



# ଗୋପୀନାଥ ମହାନ୍ତି :
# ରାଜ୍ୟଚ୍ୟୁତ ରାଜା

ଲେଖା : **ଅଶ୍ରୁକୁମାର ସିକଦାର**
ଅନୁବାଦ : **ଦାଶରଥି ଦାସ**

ଗୁଜରାଟି କ୍ଲାସିକ ଉପନ୍ୟାସ 'ସରସ୍ୱତୀଚନ୍ଦ୍ର'ର ଲେଖକ ଗୋବର୍ଦ୍ଧନରାମ ତ୍ରିପାଠୀଙ୍କ ମୃତ୍ୟୁପରେ ଡଃ ଆନନ୍ଦଶଙ୍କର ଧ୍ରୁବ ପ୍ରଶ୍ନ ଉଠାନ୍ତି ଗ୍ରୀକ୍ ବା ଇଂରାଜୀ ସାହିତ୍ୟର ଆଦର୍ଶ ଆଗରେ ରଖି ଆମ ନିଜ ସାହିତ୍ୟର ନାନ୍ଦନିକ ସୂତ୍ର ସମ୍ବନ୍ଧରେ କୌଣସି ସିଦ୍ଧାନ୍ତରେ ଉପନୀତ ହେବା କ'ଣ ବୌଦ୍ଧିକ ଦାସତ୍ୱ ନୁହେଁ ? ଔପନିବେଶିକ ପରିମଣ୍ଡଳରେ ଇଂରାଜୀ ଶିକ୍ଷା ବିସ୍ତାର ଯୋଗୁଁ ଇଂରାଜୀ ଉପନ୍ୟାସକୁ ଆଦର୍ଶ ଭାବରେ ସ୍ୱୀକାର କରି ଊନବିଂଶ ଶତାବ୍ଦୀରେ ଭାରତୀୟ ଉପନ୍ୟାସର ସୂତ୍ରପାତ ହୋଇଥିଲା—ଗୁଜରାଟି, ମରାଠି, ହିନ୍ଦୀ ଓ ବଙ୍ଗଳାରେ—ଏକଥା ଐତିହାସିକ ସତ୍ୟ । କିନ୍ତୁ ଗୋଟାଏ ବିଦେଶୀ ଆଦର୍ଶ ଆମୂଳାଗ୍ର ଗୃହୀତ ହୋଇ ନ ପାରେ; ଗୋଟିଏ ପୃଷ୍ଠଭୂମିରୁ ଅନ୍ୟ ପୃଷ୍ଠଭୂମିକୁ ସ୍ଥାନାନ୍ତର ପ୍ରକ୍ରିୟାରେ ତା'ର 'certain inadvertent mutation' ହେବାକୁ ବାଧ୍ୟ । ସେକ୍ସପିୟରୀୟ ନାଟ୍ୟାଦର୍ଶକୁ ଶିରୋଧାର୍ଯ୍ୟ କରି ବଙ୍ଗଳାରେ ବିଂଶ ଶତାବ୍ଦୀର ଆରମ୍ଭ ପର୍ଯ୍ୟନ୍ତ ଯେଉଁସବୁ ନାଟକ ଲେଖା ଯାଇଥିଲା ସେଗୁଡ଼ିକ ଉପରେ ଦେଶଜ ଐତିହ୍ୟର ପ୍ରଭାବ ପଡ଼ିଛି—ଯାତ୍ରାଗାନର, ସଂସ୍କୃତ ନାଟକର । ଉପନ୍ୟାସ କ୍ଷେତ୍ରରେ ବି ସେପରି ଏକ ବିଦେଶାଗତ ଧାରକରା ରୂପକଳ୍ପ ସହିତ ଦେଶଜ ନାନ୍ଦନିକବୋଧର ସଂଶ୍ଲେଷ ଘଟିଛି । ବିଷୟଗତ ଦିଗରୁ ଭାରତୀୟ ଉପନ୍ୟାସକୁ ଅଲଗା କରି ଚିହ୍ନି ହୁଏ । କୃଷିନିର୍ଭର ଅର୍ଥନୀତି ଓ ସମାଜ, ଔପନିବେଶିକ ଶିକ୍ଷା ବ୍ୟବସ୍ଥା, 'ଧର୍ମ (ତାର ସଂସ୍କାର ଓ ପ୍ରଥା', ଜାତି-ପ୍ରଥା, ନାରୀଙ୍କ ପ୍ରତି ବ୍ୟବହାର, ସାଂପ୍ରଦାୟିକତା' ଇତ୍ୟାଦି ଉପାଦାନ

ଦୃଷ୍ଟିରୁ ଆମେ ଭାରତୀୟ ଉପନ୍ୟାସକୁ ଚିହ୍ନି ନେଇପାରୁଁ । କିନ୍ତୁ ଏହି ଭାରତୀୟ ଉପାଦାନଗୁଡ଼ିକୁ ତ ଇଉରୋପୀୟ ବାସ୍ତବବାଦ ଧରଣର ପ୍ରାଗ୍‌ମେଟିକ୍ ଏମ୍ପିରିକ୍ୟାଲ୍ ଆଦର୍ଶରେ ଉପସ୍ଥାପନ କରିବା ସମ୍ଭବ । ସୁତରାଂ କେବଳ ଉପାଦାନ ବିଚାର କରି ଉପନ୍ୟାସର ଭାରତୀୟତା ନିର୍ଣ୍ଣୟ କରିବା ବୋଧହୁଏ ଠିକ୍ ହେବ ନାହିଁ । ସଂଧାନ କରିବାକୁ ହେବ କାଦମ୍ବରୀ, କଥାସରିତ ସାଗର, ଦଶକୁମାର ଚରିତ ଓ ଜାତକ ଇତ୍ୟାଦିର କି ଉତ୍ତରାଧିକାର ଅଛି ଭାରତୀୟ ଉପନ୍ୟାସ ଉପରେ । ପାଶ୍ଚାତ୍ୟ ଉପନ୍ୟାସର କାଳ ରୈଖିକ, ଆଉ ଭାରତୀୟ ଉପନ୍ୟାସର ବୃତ୍ତାକାର—ଏକଥା ଅବଶ୍ୟ ସବୁବେଳେ ସତ୍ୟନୁହେଁ । ତେବେ ଭାରତୀୟ କାଳ ସମ୍ବନ୍ଧରେ ଏକଥା କୁହାଯାଏ, 'all time as part of a cosmic cycle'—କଥାଟା ଗୋଦାନ, ହଁସୁଲି ବାଁକେର ଉପକଥା, ପଥେର ପାଞ୍ଚାଲି, ଗୋପୀନାଥ ମହାନ୍ତିଙ୍କ 'ପରଜା' ଓ 'ଅମୃତର ସନ୍ତାନ' ସଂପର୍କରେ ସତ୍ୟ । ଗୋଟିଏ ଗତିଶୀଳ କାହାଣୀର ଏକରୈଖିକ ଅଗ୍ରଗତି ବଦଳରେ ଆମେ ଦେଖିବାକୁ ପାଉ କେନ୍ଦ୍ରୀୟ କାହାଣୀ ସହିତ ଯୁକ୍ତ ଅନେକ କାହାଣୀଗୁଚ୍ଛ; ଛୋଟ ଛୋଟ କାହାଣୀ ମୂଳ କାହାଣୀ ସହିତ ଯୋଡ଼ାଯାଇଥିବାରୁ ଆଖ୍ୟାୟିକାର ଗତି ତ୍ୱରାନ୍ୱିତ ହୋଇ ପାରି ନଥାଏ । ଏହି ଧୀରଗତି ଏହି ମନ୍ଥରତା ମଧ୍ୟରେ ହୁଏତ ନିହିତ ଥାଏ ସେହି ସୂକ୍ଷ୍ମ ସ୍ପନ୍ଦନ, ଯେଉଁ ସ୍ପନ୍ଦନ ସାହାଯ୍ୟରେ ଲୋକଙ୍କ ମନରେ ଭାରତୀୟ ଲେଖକ ତାଙ୍କ ସମ୍ବେଦନକୁ ପ୍ରକାଶ କରିଥାନ୍ତି । ଯେଉଁ ସ୍ପନ୍ଦନର ପ୍ରକାଶ ଥିଲା ପ୍ରାଚୀନ କଥାସାହିତ୍ୟରେ, ଯେଉଁ ସ୍ପନ୍ଦନର ପ୍ରକାଶ ରାଗସଂଗୀତରେ, ତାହାର ଗୂଢ଼ ପ୍ରକାଶ ବୋଧହୁଏ ଭାରତୀୟ ଉପନ୍ୟାସରେ । ନୈତିକ ଦାର୍ଶନିକ ଉପଲବ୍ଧି ବି ଭାରତୀୟ ଲେଖକଙ୍କୁ ଅନୁପ୍ରାଣିତ କରିଥାଏ, ଫଳତଃ ଏହି ସବୁ ଉପନ୍ୟାସରେ ରୂପକତ୍ୱର ଏକ ଆଭାସ ଯେପରି ଦ୍ୟୋତିତ ରହିଥାଏ ଅବଶ୍ୟ । ବ୍ୟକ୍ତିସ୍ୱାତନ୍ତ୍ର୍ୟବାଦର ପ୍ରତିଷ୍ଠା ବ୍ୟତିରେକେ ପାଶ୍ଚାତ୍ୟ ଉପନ୍ୟାସର ଆବିର୍ଭାବ ସମ୍ଭବପର ନୁହେଁ, ତେବେ ବିଶେଷ ଭାବରେ ଭାରତୀୟ ଉପନ୍ୟାସରେ ବ୍ୟକ୍ତି ଅପେକ୍ଷା ଗୋଷ୍ଠୀ ହିଁ ଗୁରୁତ୍ୱ ପାଇଥାଏ । ଗୋଷ୍ଠୀର ବିରୁଦ୍ଧତା କରି ଯେତେବେଳେ ବ୍ୟକ୍ତି ଉନ୍ମେଷିତ

ହେବାକୁ ଗୃହେଁ, ସେତେବେଳେ ଗୋଷ୍ଠୀର ଗୁରୁତ୍ୱ ପ୍ରତି ମଧ୍ୟ ଔପନ୍ୟାସିକଗଣ ଶ୍ରଦ୍ଧାନ୍ୱିତ ରହିଥାନ୍ତି ।

ଓଡ଼ିଆ ଔପନ୍ୟାସିକ, ମହାନ୍ ଭାରତୀୟ ଲେଖକ ଗୋପୀନାଥ ମହାନ୍ତିଙ୍କ ପରଜା (୧୯୪୬) ଓ ଅମୃତର ସନ୍ତାନ (୧୯୪୭) ପଢ଼ିବା ସମୟରେ ଏହିସବୁ କଥା ମନେ ପଡ଼ିପାରେ । ସରକାରୀ କାର୍ଯ୍ୟସୂତ୍ରେ ଓଡ଼ିଶାର ଦକ୍ଷିଣାଞ୍ଚଳର ଆଦିବାସୀ ଜନଜାତିଙ୍କ ଜୀବନକୁ ସେ ନିବିଡ଼ ଭାବରେ ଚହ୍ନିଥିଲେ । ଏହି ଆଦିମ ଜନଗୋଷ୍ଠୀକୁ ବୁଝିବାକୁ ସେ ସମଗ୍ର ଜୀବନ ବିତାଇଛନ୍ତି, ଏହି କାର୍ଯ୍ୟରେ ତାଙ୍କର ତୀବ୍ର ସାମାଜିକ ଚେତନା ସବୁବେଳେ ସକ୍ରିୟ ରହିଛି । ସେହି ଚହ୍ନିବା, ସେହି ବୁଝିବା ଓ ସେହି ଚେତନାର ଯୁଗପତ୍ କ୍ରିୟାଶୀଳତାରୁ ରଚିତ ହୋଇଛି ଏହି ଦୁଇ ଅସାମାନ୍ୟ ଉପନ୍ୟାସ, କେହି କେହି ଯାହାକୁ ମହାକାବ୍ୟିକ କହିଥାନ୍ତି, କିନ୍ତୁ ସେଗୁଡ଼ିକ ଆଞ୍ଚଳିକ ଉପନ୍ୟାସର ଲକ୍ଷଣାକ୍ରାନ୍ତ । ଆଞ୍ଚଳିକ ଉପନ୍ୟାସ ଲେଖାହୁଏ ସେହିମାନଙ୍କୁ ନେଇ, ଯେଉଁମାନେ ଅନଗ୍ରସର, ଯେଉଁମାନେ ସମାଜର ମୂଳଧାରାଠାରୁ ବହୁଦୂର ବିଚ୍ଛିନ୍ନ—ଯେମିତି ଶଲୋକଭ୍ଙ୍କ ଉତ୍ତରବଙ୍ଗୀ କଣାକଗଣ, ତାରାଶଙ୍କରଙ୍କ କାହାରଗଡ଼ା, ଗୋପୀନାଥଙ୍କ କନ୍ଧ ଓ ପରଜାଜାତିର ମଣିଷମାନେ । ମୂଳଧାରାଠାରୁ ଦୂରରେ, ଯାତାୟାତ ସହଜ ନୁହେଁ ଏମିତି ଏକ ବିଚ୍ଛିନ୍ନ ଭୂଖଣ୍ଡରେ ଏହି ମଣିଷ-ଗୁଡ଼ିକ ବାସ କରିଥାନ୍ତି, ଆଉ ଏହି ମଣିଷମାନଙ୍କ ସହିତ ଭୂଖଣ୍ଡସ୍ଥ ପ୍ରକୃତିର ଯେଉଁ ଏକାତ୍ମତା ଗଢ଼ିଉଠେ ତାହା ହିଁ ଆଞ୍ଚଳିକ ଉପନ୍ୟାସର ଆଧେୟ ହୋଇଯାଏ । ଏହିସବୁ ମଣିଷଙ୍କ ଜୀବନରେ ପ୍ରକୃତିର ଗ୍ରନ୍ଥି ଆସି ପଡ଼େ । ଗୋପୀନାଥଙ୍କ କନ୍ଧ ଓ ପରଜା ଉପଜାତିର ମଣିଷମାନଙ୍କ ବସବାସ ପାହାଡ଼ ଓ ଜଙ୍ଗଲରେ । ପାହାଡ଼ ଓ ମାଳଭୂମିର ପରିବର୍ତ୍ତମାନ ବର୍ଣ୍ଣସୁଷମା 'ପରଜା' ଉପନ୍ୟାସର ନାୟକ ସୁକ୍ରୁଜାନି ମନରେ ବିସ୍ମୟ ଓ ରହସ୍ୟବୋଧ ଜଗାଏ । ପାହାଡ଼ ଦେହରେ ସିଡ଼ିଭଳି ଧାପେ-ଧାପେ ଶସ୍ୟପୂର୍ଣ୍ଣ କୃଷିକ୍ଷେତ୍ର ଓ ଝରଣାର ଜଳଧାରା କଳରୋଳ ତାହାର ଅସ୍ତିତ୍ୱ ସହିତ ମିଶିଯାଇଥାଏ । 'ଅମୃତର ସନ୍ତାନ'ର ଉପନ୍ୟାସରେ ମିଣିଆପାଯୁ ଗାଆଁର ପ୍ରଧାନ ବୃଦ୍ଧ ସରବୁ ପାହାଡ଼ ଅଞ୍ଚଳ ଆଡ଼କୁ ଅନାଇଁ ଅନାଇଁ

ଘବେ, ଆଉଥରେ ଜନ୍ମ ନେବ କି ନାହିଁ । ସୁନ୍ଦର ଏହି ପାହାଡ଼ ରାଜ୍ୟ, ଏହି ମାଳଦେଶ, ଏହି ସ୍ଫଟିକ ଝରଣା—ସବୁ ଯେମିତି ତାହାର ଧମନୀର ରକ୍ତଧାରାର ସ୍ପନ୍ଦନ ସହିତ ମିଶି ଏକାକାର । ଜନ୍ମରୁ ପ୍ରକୃତି ଏଠିକାର ଲୋକଙ୍କୁ ନଚାଏ, ମତାଏ ଓ ଗୀତ ଗାଇବାକୁ ପ୍ରବର୍ତ୍ତାଏ । ନଦୀ ଯେପରି ଓତପ୍ରୋତ ଅନ୍ୱିତ ମଲ୍ଲବର୍ମନଙ୍କ ତିତାସ-ତୀରବର୍ତ୍ତୀ ମଣିଷମାନଙ୍କ ଜୀବନରେ, ବୀରଭୂମର ଲାଲ କଠିନ ମାଟି ଯେପରି ତାରାଶଙ୍କରଙ୍କ ଚରିତ୍ରଗୁଡ଼ିକର ସତ୍ତାରେ ବର୍ତ୍ତମାନ, ଠିକ୍ ସେପରି ଗୋପୀନାଥଙ୍କ ଉପନ୍ୟାସ ଦୁଇଟିର ମଣିଷମାନଙ୍କ ଅସ୍ତିତ୍ୱ ସହିତ ମିଶି ରହିଛି ଏହି ପାହାଡ଼ ଓ ଏହି ଅରଣ୍ୟ ।

ଟୁରିଷ୍ଟଙ୍କ କ୍ୟାମେରା କଳୁଷିତ ଦୃଷ୍ଟି ନେଇ ବା ସାମ୍ବାଦିକଙ୍କ ବିହଙ୍ଗମ ଦୃଷ୍ଟି ନେଇ, ଏପରିକି ସାଂସ୍କୃତିକ ନୃତତ୍ତ୍ୱବିଦ୍‌ଙ୍କ ଅଧ୍ୟୟନ ନେଇ ଖାଣ୍ଟି ଆଞ୍ଚଳିକ ଉପନ୍ୟାସ ଲେଖାଯାଇ ପାରେ ନାହିଁ । ଲୋଡ଼ା ଶିଳ୍ପର ତନ୍ମୟତା, ଶିଳ୍ପର ଦୂରତ୍ୱ । ମୂଳଧାରାରୁ ବିଚ୍ଛିନ୍ନ ମଣିଷମାନଙ୍କ ଜୀବନ, ଆଗ୍ରହ ଆଚରଣ, ବିଶ୍ୱାସ ଓ ଜୀବନବୋଧକୁ ତନ୍ନ ତନ୍ନ କରି ଜାଣିବା ଦରକାର, ପୁଙ୍ଖାନୁପୁଙ୍ଖ ଭାବରେ ବୁଝିବା ଦରକାର ସେମାନଙ୍କ ପୃଷ୍ଠଭୂମିକୁ, ଅଧିକନ୍ତୁ ଉପଲବ୍ଧି କରିବା ଦରକାର ନିସର୍ଗ ସହିତ ତାଙ୍କ ଜୀବନ ତରଙ୍ଗର ପ୍ରବହମାନ ସମ୍ପର୍କକୁ । ସହୃଦୟ ସଂଯୋଗ ପ୍ରୟୋଜନ, ପ୍ରୟୋଜନ ସହ୍ୟଶୀଳ ଆତ୍ମୀୟତା; ସେମାନଙ୍କ ଜୀବନର ଶରିକ୍ ହେବାକୁ ହେବ । ପ୍ରଗାଢ଼ ସହାନୁଭୂତି ସହିତ ଯେଉଁ ଅନଗ୍ରସର ମଣିଷମାନଙ୍କୁ ନିଜର ସମକକ୍ଷ ମଣିଷ ବୋଲି ଗଣନା କରି ପାରିଲେ ତେବେ ଯାଇଁ ସମ୍ଭବ ହୁଏ ସେହି ତନ୍ମୟତା, ଯାହା ଆଞ୍ଚଳିକ ଉପନ୍ୟାସର ପ୍ରଥମ ସର୍ତ୍ତ । ଗୋପୀନାଥ ମହାନ୍ତିଙ୍କ ସମ୍ବନ୍ଧରେ ରାଜନୈତିକ ତଥ୍ୟ ଅନୁସଂଧାନ କରିବା ଦରକାର ନାହିଁ, ସେ କେତେଦିନ ଆଦିବାସୀ ମଣିଷଙ୍କ ନିବିଡ଼ ସାନ୍ନିଧ୍ୟରେ ଜୀବନ କଟାଇଛନ୍ତି ତାହା ବି ଜାଣିବା ଦରକାର ନାହିଁ । ତାଙ୍କ ଉପନ୍ୟାସ ହିଁ ତାଙ୍କ ଗଭୀର ସହୃଦୟତା ଓ ଉପଲବ୍ଧିର ଯଥେଷ୍ଟ ଅଭିଜ୍ଞାନ । ଏହା ଏପରି ସ୍ତରର ସହାନୁଭୂତି ଯେ, ଯାହା ଶିଳ୍ପଗତ ଦୂରତ୍ୱ ଅକ୍ଷୁଣ୍ଣ ରଖେ ବୋଲି ଭାବାଳୁତାର ସ୍ତରକୁ ଖସିପଡ଼େ ନାହିଁ ।

ଏଣେ ଉପନ୍ୟାସକୁ ଆଞ୍ଚଳିକ ଗଣ୍ଡି ମଧ୍ୟରେ ସୀମାବଦ୍ଧ ହୋଇ ରହିଲେ ଚଳିବ ନାହିଁ । କେବଳ ଭାଷା, ପୋଷାକ, ଖାଉଟିଆ, ଆରାଧନା ପଦ୍ଧତି ଓ ଜୀବିକାର ବର୍ଣ୍ଣନାରେ ଅଟକି ରହିଲେ ମଧ୍ୟ ଯଥେଷ୍ଟ ହେବ ନାହିଁ । ତାହା ଯେତେ ପୁଙ୍ଖାନୁପୁଙ୍ଖ ହେଉ, ସେହି ବର୍ଣ୍ଣନା ପ୍ରକୃତରେ କେବେ ଯଥେଷ୍ଟ ହେବ ନାହିଁ । ତାକୁ ଅତିକ୍ରମ କରିବାକୁ ହେବ, ଆଞ୍ଚଳିକତାରୁ ଯାହାର ଆରମ୍ଭ ତାକୁ ମାନବିକ ଅସ୍ତିତ୍ୱର ତାତ୍ପର୍ଯ୍ୟ ସଂଧାନ ଉଦ୍ଦେଶ୍ୟରେ ଅଗ୍ରସର ହେବାକୁ ହେବ । ଅଞ୍ଚଳ ବିଶେଷର କ୍ଷୁଦ୍ର ଗଣ୍ଡି ମଧ୍ୟରେ ମାନବ ନିୟତିର ସଂଘାତ ସଙ୍କଟ ଯେଉଁ ସତ୍ୟରୂପ ପରିଗ୍ରହ କରେ, ସେହି ରୂପକୁ ଶ୍ରେଷ୍ଠ ଔପନ୍ୟାସିକ ଅବଶ୍ୟ ଦେଖାଇବେ ।

ପ୍ରକୃତି ପରିବେଶ ପାହାଡ଼ ଅରଣ୍ୟ ଅପରିବର୍ତ୍ତିତ ଥାଏ, ଜୀବନ ଧାରା ବି ନିଜସ୍ୱ ବୈଚିତ୍ର୍ୟର ସୁନିର୍ଦ୍ଦିଷ୍ଟ ପଥରେ ଆବର୍ତ୍ତିତ ହୁଏ । ଋତୁ-ଚକ୍ରର ଆବର୍ତ୍ତନ ସହିତ ସମାନ୍ତରାଳ ଭାବରେ ଚାଲେ କର୍ମଚକ୍ର, ପୂଜାପାର୍ବଣ, ଉତ୍ସବର ମାଳା । କେବେ ଜମି ଚଷାଯିବ, କେବେ ଆଖୁ କି ମକା କଟାହେବ—ସବୁ ନିର୍ଦ୍ଧାରିତ । ଫାଙ୍କେ ଫାଙ୍କେ ଋତୁ ଆଉ ଫସଲର ନିୟମ ଅନୁସାରେ ଗୋଟିଏ ପରବ । ଏହି ଜନଜାତିର ମଣିଷ ଜାଣନ୍ତି ସଂସାର ଗୋଟିଏ ଶୃଙ୍ଖଳା, ବ୍ରହ୍ମାଣ୍ଡବ୍ୟାପୀ ନିୟମ ପରମ୍ପରାରେ ଚାଲିଛି । ବନ୍ଧା ନିୟମରେ ଯାହା ଯେଉଁଠି ଯେତେବେଳେ ହେବା କଥା ହେବ, ତରତର ହେବା କି ବାଡ଼େଇପିଟି ହେବା ନିଷ୍ପ୍ରୟୋଜନ । ଗୋଟିଏ ତାରା ନିମ୍ନଗାମୀ ନ ହେଲେ ଅନ୍ୟ ତାରାଟି ଉପରକୁ ଉଠିବେ ନାହିଁ । ଗଞ୍ଜାମର ମାଳଅଞ୍ଚଳ ଠାରୁ ମଧ୍ୟପ୍ରଦେଶର ବସ୍ତର ଓ ମାଲ୍ୟବାନ ଗିରି ଅଞ୍ଚଳ ପର୍ଯ୍ୟନ୍ତ ଭୂଖଣ୍ଡ ମଧ୍ୟରେ ଏହି ଆଦିବାସୀଙ୍କ ପୂର୍ବପୁରୁଷ ନାଚକୁଦ ଆନନ୍ଦ ଉତ୍ସବରେ ସରଳ ଜୀବନ ଯାପନ କରି ଯାଇଛନ୍ତି; ଏଠାରେ ଧାଡ଼ି ଧାଡ଼ି ବୁଢ଼ା ପାହାଡ଼ର ଦେଶ । ଏହି ସବୁ ପାହାଡ଼ ପ୍ରାଚୀନ ଭୂମିକମ୍ପ ଓ ଆଗ୍ନେୟଗିରିର ଉତ୍ତପ୍ତ ଉଚ୍ଛ୍ୱାସରେ ଗଢ଼ା । ଏହି ସବୁ ବୁଢ଼ା ପାହାଡ଼ ତାହାର କୋଳରେ ଆଶ୍ରିତ ନରନାରୀଙ୍କ ଜୀବନଯାପନ, ଉତ୍ସବ ଉଲ୍ଲାସ ଓ ନାଚଗୀତର ଆନନ୍ଦ ହିଲ୍ଲୋଳକୁ ଦେଖି ଚାଲିଛନ୍ତି । ଏଠାରେ ଯେତେବେଳେ ବର୍ଷା

ଆସେ, ମେଘ ଘୋଟେ, ସେତେବେଳେ କେବଳ ବର୍ଷଣ କରେନାହିଁ, ସପାସପ୍ ଯେପରି ଗୁଳିଗୁଳ ଚଳାଏ । ଏଠି ବସବାସ କରନ୍ତି ମହିଷଖିଆ ବାଘ, ଓଙ୍ଗର ଚିତାବାଘ ଓ ଭଲ୍ଲୁକଙ୍କର କାଳ କଳାନାଗ । ତଥାପି ଏ ସବୁ ଭିତରେ ଧୀରେ ଧୀରେ ଜନଜାତିର ଲୋକେ ପରମ୍ପରାକ୍ରମେ ନିଜସ୍ୱ ସଂସ୍କୃତିର ପରିଚୟକୁ ଆଗେଇ ନେଇ ଚାଲିଛନ୍ତି,ଫସଲ ବଢ଼ାଇଛନ୍ତି,ଚାଷଜମିର ପରିମାଣ ବଢାଇଛନ୍ତି । କେତେ ସଂଗ୍ରାମ, କେତେ ଆହରଣ । ପୁରୁଷମାନେ ବଣକୁ ଶିକାର କରି ଯାଆନ୍ତି, ଶିକାରୀଙ୍କ ପଦଶବ୍ଦରେ ଅରଣ୍ୟ ମୁଖରିତ ହୁଏ । ବର୍ଷା ପରେ ଶିକାରର ଆୟୋଜନ ହୁଏ । ଟାଙ୍ଗିଆ ପଜାପ ଏ, ତୀର ଫଳକରେ ବିଷ ବୋଳାଯାଏ । ପୁରୁଷ ଶିକାରକୁ ବାହାରେ, ସ୍ତ୍ରୀଲୋକ-ମାନେ ତାଙ୍କୁ ଉଦ୍ଦୀପିତ କରନ୍ତି । ବଣରେ ବି ଗୋରୁ ମେଣ୍ଢା ଚରାନ୍ତି ଏଇ ପୁରୁଷମାନେ । ନାରୀମାନେ ଯାଆନ୍ତି କନ୍ଦ ଖୋଳି ଓ କାଠକାଟି । ଗୋଟାଏ ବଡ଼ କନ୍ଦ ସଂଗ୍ରହ କରି ପାରିଲେ ଦୁଇଦିନର କ୍ଷୁଧା ନିବାରଣ କରିହୁଏ । ଖାଦ୍ୟ ସନ୍ଧାନରେ ସ୍ତ୍ରୀ ଲୋକଙ୍କର ବିଶ୍ରାମ ନଥାଏ । ବଣକୁ ସେମାନେ ଭଲ ପାଆନ୍ତି, ବଣ ସେମାନଙ୍କ ପାଇଁ କେବଳ ପ୍ରୟୋଜନ । ନିବାରଣର ଉପାୟ ମାତ୍ର ନୁହେଁ । କାନରେ ଶୁଣନ୍ତି ସେମାନେ ବାଘ ଓ ଅନ୍ୟ ଜନ୍ତୁର ପରିଚିତ ଶବ୍ଦ । ଚଲ ଶାଗୁଣା ହୁଅନ୍ତି ତାଙ୍କର ନିତ୍ୟ ସଙ୍ଗୀ । ନିତ୍ୟସଙ୍ଗୀ ତାଙ୍କର ଝିଲମିଲ ଖଗ, ଝିକମିକ ସୁନ୍ଦର ଅଗଣିତ ପକ୍ଷୀ । ଝିଅମାନେ ସାନନ୍ଦେ ଦେଖନ୍ତି ନୂତନ ବଉଳ, ନୂଆପତ୍ର ଓ ନୂଆଫୁଲ । ଦଳବଦ୍ଧ ହୋଇ ସେମାନେ ସଂସାରର ପ୍ରୟୋଜନ-ବଶତଃ ବଣକୁ ଯାଆନ୍ତି, ସେଠାରେ କଥାବାର୍ତ୍ତା ହୁଅନ୍ତି, ହସନ୍ତି, ଆଉ ମଝିରେ ମଝିରେ ଚିନ୍ତା ବେଦନାର ବୋଝ ହାଲୁକା କରିବାକୁ କାନ୍ଦନ୍ତି ବି ।

ପ୍ରାଚୀନ ଐତିହ୍ୟର ଅଧିକାରୀ ଏହି ସବୁ ଜନଗୋଷ୍ଠୀ ପ୍ରକୃତି ପରିବେଶରେ ବାସ କରନ୍ତି । ଆର୍ଯ୍ୟମାନେ ଯେ ଆସିଥିଲେ— ତାହା ତ ଗତକାଲର କଥା । ତା ଆଗରୁ ଥିଲେ ଦ୍ରାବିଡଗଣ । ଆହୁରି ତା ଆଗରୁ ନାନା ଜାତି । କିନ୍ତୁ ଏହି ପାହାଡ଼ଗୁଡିକର ପ୍ରାଚୀନତମ ସାଥି କନ୍ଧ, ପରଜା ଇତ୍ୟାଦି । କନ୍ଧଙ୍କ ଚିରାଗତ କାହାଣୀ ଅନୁସାରେ

ରାମଚନ୍ଦ୍ର ଖଣ୍ଡ ବିଚ୍ଛିନ୍ନ କପିଗୋଷ୍ଠୀକୁ ଏକତ୍ର କରିଥିଲେ । ଦୀନଦରିଦ୍ରଙ୍କ ସାଙ୍ଗରେ ଧରି ବର୍ଚ୍ଛା, ଖଣ୍ଡା ଓ ଟେଙ୍ଗା ପଥରରେ ସେ ପରାଜିତ କରିଥିଲେ ପୁଞ୍ଜିବାଦୀ ସଭ୍ୟତାକୁ । ଦରିଦ୍ର ନେତା କିନ୍ତୁ ରାଜାହୋଇ ସେହି ପୁଞ୍ଜିବାଦୀ ସଭ୍ୟତାକୁ ପୁନଃପ୍ରତିଷ୍ଠିତ କରି ଯାଇଛନ୍ତି । ଗରିବ ଓ ଅସ୍ପୃଶ୍ୟ ଯେଉଁଠି ଥିଲେ ସେହିଠାରେ ହିଁ ରହିଗଲେ । ତାଙ୍କର କୀର୍ତ୍ତିଗାନ କଲେ ବାଲ୍ମୀକି ନାମକ ହରିଜନ ଜାତିବିଶେଷର ରତ୍ନାକର । ଏହି କନ୍ଧମାନଙ୍କର, ଏହି ପରଜାମାନଙ୍କର ଲିପି ନାହିଁ, ଗ୍ରନ୍ଥ ନାହିଁ । ସବୁ ଜ୍ଞାନ ମୁହେଁ ମୁହେଁ ଥାଏ, ସବୁ ଜ୍ୟୋତିଷୀ ଗୃହସ୍ଥ ଗଣନାଭିତ୍ତିକ । ଆହୁରି ଅଛି ଦିଶାରି ଓ ବେଜୁଣୀର ଦିବ୍ୟଦୃଷ୍ଟି । ଐତିହ୍ୟର ଉତ୍ତରୀ ସେମାନେ ଗୋଷ୍ଠୀକୁ ପରିଚାଳିତ କରିଥାନ୍ତି । ପିତୃକୁଳ ଓ ମାତୃକୁଳକୁ ଆଗରେ ରଖି ମନ୍ତ୍ରୋଚ୍ଚାରଣ ମଧ୍ୟରେ ନବଜାତ ଶିଶୁର ନାମକରଣ କରାଯାଏ । ଯେହି ଉତ୍ସବ ଶିଶୁକୁ ସଂଲଗ୍ନ କରିଦିଏ ତାର ବହୁକାଳ ଗତ ପରମ୍ପରା ଓ ପ୍ରାଚୀନ ସଂସ୍କୃତି ସହିତ । ଧର୍ମ ଐତିହ୍ୟର ଧାରକ ଓ ବାହକ ବୋଲି ଏହି ହତଭାଗ୍ୟ ଦରିଦ୍ର ମଣିଷମାନେ ଏକ ରାଜୋଚିତ ମହିମାର ଅଧିକାରୀ । ସାରାଦିନ ହାଡ଼ଭଙ୍ଗା ପରିଶ୍ରମ ପରେ ଯେତେବେଳେ କୁଡ଼ିଆରେ ଆସି ବିଶ୍ରାମ ନିଅନ୍ତି ସେତେବେଳେ ଏହି ପ୍ରାଚୀନତା ହିଁ ତାଙ୍କୁ ଦେଇଥାଏ ଅନନ୍ୟ ମାନସିକ ପ୍ରଶାନ୍ତି ଓ ସନ୍ତୋଷ । ପୁଅକନ୍ୟାଙ୍କୁ ନେଇ ତାଙ୍କର ଜୀବନ, ଗୋଷ୍ଠୀ ସହିତ ଏକାତ୍ମ ହେବାରେ ହିଁ ତାଙ୍କର ଜୀବନ । 'ପରଜା' ଉପନ୍ୟାସରେ ସୁକରୁ ସନ୍ଧ୍ୟାବେଳେ ପରିବାରର ସମସ୍ତଙ୍କୁ ଜଳୁଥିବା ନିଆଁର ଚାରିପାଖରେ ବସାଇ ତୃପ୍ତ ମନରେ ବସିଥାଏ । ଘନାୟମାନ ସନ୍ଧ୍ୟା ଓ ନିକଟବର୍ତ୍ତୀ ପାହାଡ଼ରୁ ଯେପରି ସେ ଶାନ୍ତିର ନିଃଶ୍ୱାସ ବାୟୁ ସଂଗ୍ରହ କରିଥାଏ । ଗୋଷ୍ଠୀକୁ ଅସ୍ୱୀକାର କରି କେବେ ଉଗ୍ରହୋଇ ଉଠେନାହିଁ ତାର ବ୍ୟକ୍ତିସ୍ୱାତନ୍ତ୍ର୍ୟ । ପଛରେ ଯେପରି ତାରଥାଏ ଧର୍ମ ଉତ୍ତରାଧିକାର, ଠିକ୍ ସେପରି ଦୂରତମ ଭବିଷ୍ୟତ ପର୍ଯ୍ୟନ୍ତ ଏକ ସନ୍ତୁଷ୍ଟ ପ୍ରଶାନ୍ତ ଜୀବନର ପ୍ରସାର ସେ ଦେଖିପାରୁଥାଏ । ସୁକରୁ ଦେଖିପାରେ, ତାର ଘର ନାତିନାତୁଣୀର ଘର ହେବ । ଦେଖିପାରେ ତାର ବଂଶ ବହୁଗୁଣିତ ହେଉଛି, ଗୁହାଳରେ ଷାଠିଏଟି

ଗୃହପାଳିତ ପଶୁ, ସନ୍ତାନସନ୍ତତି ଗୃହ କାର୍ଯ୍ୟରେ ନିଯୁକ୍ତ, ଫସଲ ଫଳୁଛି ପ୍ରଚୁର ।

ଶାନ୍ତଶିଷ୍ଟ ଓ ସରଳ ଏହି ମଣିଷମାନଙ୍କ ମଧ୍ୟରେ ମାନ୍ୟବୋଧ ଗଭୀର ଭାବରେ କାର୍ଯ୍ୟକରେ । ଷଡ଼ରିପୁ ତାଙ୍କର ନଥାଏ କୁହେଁ; ଦାରିଦ୍ର୍ୟଜନିତ ଦୁର୍ଗନ୍ଧ ମଇଳା ବି ଥାଏ ଜୀବନରେ, କିନ୍ତୁ ମନ ତାଙ୍କର ଖୋଲା ପରିଷ୍କାର । ଗୋଷ୍ଠୀର ନୀତି ଯେ ଲଙ୍ଘନ କରେ, ଗୋଷ୍ଠୀ ତାକୁ ଶାସ୍ତି ଦିଏ । ସେ ଜାତିଭ୍ରଷ୍ଟ ହୁଏ, ତ୍ରିଶଙ୍କୁର ଅବସ୍ଥା ଘଟେ ତାର । ଗୋଷ୍ଠୀ ଯାହା 'ଗୃହେଁ' ନାହିଁ, ସୀମିତ ଯାହାକୁ ଅନ୍ୟାୟ ବୋଲି ମନେକରେ ତାହାହିଁ ପାପ, ତାହାହିଁ ନୀତିହୀନତା । ସେମାନେ କାହାର ସ୍ତ୍ରୀ ପ୍ରତି ଲୋଲୁପ ଦୃଷ୍ଟିରେ ଚାହାନ୍ତି ନାହିଁ, କାହାର ଜମି ନିଅନ୍ତି ନାହିଁ । ସ୍ୱଭାବର ସନ୍ତାନ ଏଇ ଉପଜାତିଗୁଡ଼ିକର ଝିଅ ବୋହୂ ଖୋଲାରେ ଲଙ୍ଗଳା ହୋଇ ଗାଧାନ୍ତି । ଖୋଲା ପାରି ହେଉଥିବାବେଳେ କୌଣସି ପୁରୁଷ ତାଙ୍କ ଆଡ଼କୁ ଅନାନ୍ତି ନାହିଁ । ସହଜାତ ଶିଷ୍ଟାଚାର ସେପରି ଇତରତାକୁ ବାଧା ଦେଇଥାଏ । ମୌଖିକ ଚୁକ୍ତିର ସୁଯୋଗ ନେଇ, ତାଙ୍କ ସହଜାତ ସରଳତାରୁ ଫାଇଦା ଉଠାଇ ସାହୁକାରଗଣ ଓ ସରକାରୀ କର୍ମଚାରୀବୃନ୍ଦ ତାଙ୍କୁ ସର୍ବସ୍ୱାନ୍ତ କରିଥାନ୍ତି । କିନ୍ତୁ ଏହି ମଣିଷଗୁଡ଼ିକ କଥାର ଖିଲାପ କରି ଜାଣନ୍ତି ନାହିଁ । ହିସାବର କାରସାଦି ସେମାନେ ବୁଝନ୍ତି ନାହିଁ, କିନ୍ତୁ ନିଜେ ସତ୍ୟବାଦୀ ବୋଲି ଅନ୍ୟକୁ ମିଥ୍ୟାବାଦୀ ବୋଲି ମଧ୍ୟ ଭାବିପାରନ୍ତି ନାହିଁ । ସେଥିପାଇଁ ମିଥ୍ୟା ଋଣ-ଜାଲରେ ଆପାଦମସ୍ତକ ବୁଡି ରହିଥାନ୍ତି, ବଂଶପରମ୍ପରାକ୍ରମେ ଚୁକ୍ତିବନ୍ଧ ରହି ଗୋତି ବା ଶ୍ରମଦାସ ହୋଇ ସେହି ମିଥ୍ୟାଋଣ ପରିଶୋଧ କରୁଥାନ୍ତି, ତଥାପି ସତ୍ୟଭ୍ରଷ୍ଟ ହୁଅନ୍ତି ନାହିଁ । ଅତୀତରେ ଦିନଥିଲା ଯେତେବେଳେ ବସ୍ତିର ସମସ୍ତେ ଥିଲେ ଗୋଟିଏ ହାଣ୍ଡିର ଗୋଷ୍ଠୀ । ଏବେ ଏକ ହାଣ୍ଡି ନାହିଁ ଅବଶ୍ୟ, କିନ୍ତୁ ଜଣକ ଘରେ ଭାତ ରନ୍ଧାଗଲେ ଅନ୍ୟମାନେ ଉପବାସ ରହି ପାରନ୍ତି ନାହିଁ । ଘର ତୋଳିବାକୁ ଜମି ନଥିଲେ ସାଁଓନ୍ତା ବା ଗ୍ରାମ ପ୍ରଧାନ ଜମିଦିଏ । ଗାଆଁର ଭାଇମାନେ ମିଶି ଘର ତୋଳି ଦେବେ । ଯେତେଦିନ ଦରକାର ମାଣ୍ଡିଆ ଜାଉ

ଦେବେ । ଗୋଷ୍ଠୀ ମନରେ ଧନୀ ଦରିଦ୍ର ଭେଦଭାବ ନାହିଁ । ସବୁଠି ଗୋଟିଏ ରକମର ଗନ୍ଧ, ଗୋଟିଏ ରକମର ଅର୍ଦ୍ଧନଗ୍ନତା । ଏକ ଭାବ, ଏକ ଧ୍ୟାନ । ତାଙ୍କ ପାଖରେ ପଇସାର ମୂଲ୍ୟ ନାହିଁ, ତେଣୁ ପଇସାର ଗର୍ବ ବି ଅବର୍ତ୍ତମାନ ।

ଅରଣ୍ୟ-ପାହାଡ଼ କୋଳରେ ସେମାନେ ବାସ କରନ୍ତି । ସ୍ୱଭାବ ସାଙ୍ଗରେ ରହି ତାଙ୍କ ଜୀବନ ବି ସ୍ୱାଭାବିକ । ନାରୀପୁରୁଷଙ୍କ ପ୍ରେମ ଓ ମିଳନ କ୍ଷେତ୍ରରେ ବି କୌଣସି କୃତ୍ରିମ ବାଧା ନାହିଁ । ମନର ମିଳନରେ ବିବାହ, ମନରେ ଅମେଳ ଘଟିଲେ ବିଚ୍ଛେଦ । ଅବିବାହିତ ଯୁବକ-ଯୁବତୀମାନେ ସ୍ୱତନ୍ତ୍ର ଘରେ ରାତି ଯାପନ କରନ୍ତି । ବଂଶୀର ସ୍ୱରରେ ଝୁଲେ ମନ ଉଆଁସିଆ । ଧାଙ୍ଗଡ଼ ବଧା ଘରୁ ବାହାରି ଅନେକ ସମୟରେ ପରଜାଯୁବତୀ ଗୋପନରେ ପ୍ରେମିକ ସହିତ ମିଳିତ ହୁଏ । ଯେ କୌଣସି ପୂଜା ଉତ୍ସବରେ ନାଚରେ ବି ଯୋଗ ଦିଅନ୍ତି ଧାଙ୍ଗ୍ରା-ଧାଙ୍ଗ୍ରି । ନୃତ୍ୟଗୀତ ଉଦ୍ଦାମ ହୋଇ ଉଠେ, ସର୍ବାଙ୍ଗ ଝଲମଲ—ଆଖିରେ ନିଶା, ମୂର୍ଦ୍ଧରେ ସ୍ୱପ୍ନ । ଯେପରିକି ପ୍ରକୃତିପୁରୁଷ ଆକାଶ ମାଟିର ମିଳନ ଧ୍ୱନିତ ହୁଏ ସଙ୍ଗୀତରେ, ସ୍ପନ୍ଦିତ ହୁଏ ନୃତ୍ୟରେ । ସୃଜନୀଶକ୍ତିର ମାୟା ଯୁବକ-ଯୁବତୀଙ୍କ ମଧ୍ୟରେ ରୂପ ପରିଗ୍ରହ କରେ । ବୁଢ଼ାବୁଢ଼ୀ ସେହି ନାଚ ଦେଖି ହଜିଲା ଯୌବନ ଫେରି ପାଆନ୍ତି । ଏହିପରି ତରୁଣମାନେ ବାଛି ନିଅନ୍ତି ଜୀବନସଙ୍ଗୀ, ଜୀବନସଙ୍ଗିନୀ । ପକ୍ଷୀଙ୍କର ଋତୁଅଛି, ନିଜ ନିଜର ସମୟ ସେମାନେ ଖୋଜି ନିଅନ୍ତି, ଯେପରି ଜ୍ୟୋତ୍ସ୍ନାରେ ଚକୋର, ସକାଳ ସନ୍ଧ୍ୟାରେ ଡାହୁକ, ଦ୍ୱିପ୍ରହରରେ ଘୁ ଘୁ, ବାଦୁଡ଼ିଘୁଣୀ ଗୁହାନ୍ତି ମଧ୍ୟରାତି । ମଣିଷ କିନ୍ତୁ ସମୟର ଅପେକ୍ଷା ରଖେ ନାହିଁ, ରୁଚି ଓ କଳ୍ପନାବଳରେ ଗଢ଼ିନିଏ ନିଜର ପରିବେଶ ଓ ପରିସ୍ଥିତି । ଗାଁର ହାଟ—ମଣିଷର ଏହି ଚଳନ୍ତି ପୃଷ୍ଠଭୂମି—ତାହା କିଣାବିକାର ସ୍ଥାନ ଯେତିକି ନୁହେଁ, ତାହାଠାରୁ ବେଶୀ ସାମାଜିକ ମିଳନ କେନ୍ଦ୍ର; ସେଠାରେ କିଣାବିକା ବ୍ୟପଦେଶରେ ଯୁବକ ଯୁବତୀଏ ଭାବବିନିମୟ କରିବାକୁ ଚମତ୍କାର ସୁଯୋଗ ପାଆନ୍ତି । ସାଙ୍ଗସୁଙ୍ଗ ଗୀତ ଗାଇଗାଇ ଯାଆନ୍ତି ଧାଙ୍ଗ୍ରା ଧାଙ୍ଗ୍ରୀ— ଆଉ ପରସ୍ପରକୁ ଭଲପାଆନ୍ତି । ଲୁଚିଲୁଚି ନାହିଁ, ଭଦ୍ରାମିବନା ନାହିଁ, ଭାବହେଲେ ପ୍ରେମ ଦେଖାଦେଲେ ପରସ୍ପରକୁ ପାଖକୁ ଟାଣନ୍ତି । କେଉଁ

ଗୋଷ୍ଠୀର, କେଉଁ ଗାଁର ସେଟା ବଡ଼କଥା ନୁହେଁ । ଯାର ଯାହାକୁ ମନ ବକଲା, ରୁଚି ବାଛିଲା ସେ ଗ୍ରହଣ କଲା ତାର ସମ୍ବନ୍ଧ । ଫସଲ କଟା ହୋଇ ଯାଇଛି, ହାତରେ ପ୍ରଚୁର ଅବସର । ମହୁଲ ପାଚିଛି । ମଦ ପ୍ରସ୍ତୁତ ହୋଇଛି ପ୍ରଚୁର । ଜଙ୍ଗଲ ଶୁଖିଛି ବୋଲି ଶିକାରର ବି ସୁବିଧା । ନୃତ୍ୟଗୀତ ଓ ବାଦ୍ୟନାଦରେ ମୁଖରିତ ଉତ୍ସବରେ କି ଜଙ୍ଗଲର ଗୁମ୍ଫା ଖୋଲରେ ଯୁବକଯୁବତୀଙ୍କ ସୁଧସୋହାଗ । ପ୍ରେମ ଓ ଉତ୍ସବରେ ପ୍ରମାଣିତ ହୁଏ ପଇସା ତାଙ୍କର ଶ୍ରେୟ ନୁହେଁ, ଶ୍ରେୟ ପ୍ରାଣ । ଢୋଲ ଟମକ ଶିଙ୍ଗା ଡୁଙ୍ଗ୍ଡୁଙ୍ଗାର ଉତ୍ତାଳ ନାଦତରଙ୍ଗରେ ସମଗ୍ର ଉପଜାତି ଅଞ୍ଚଳ ସୁଠାମ ଉଜ୍ଜ୍ୱଳ ଅଙ୍ଗ ସମଷ୍ଟିର ନୃତ୍ୟରେ ମାତାଲ ହୋଇଉଠେ । ବୁଢ଼ା ପାହାଡ଼ ଯେମିତି ଘୁମେଇ ଘୁମେଇ ଏହି ଆନନ୍ଦ ହିଲ୍ଲୋଳ ଦେଖେ, ଠିକ୍ ସେପରି ବୁଢ଼ାବୁଢ଼ୀ ତରୁଣତରୁଣୀଙ୍କ ପ୍ରେମଲୀଳାକୁ ଦେଖି ଅନୁମୋଦନ ଜଣାନ୍ତି । ବିକାର ନାହିଁ, ବନ୍ଧନ ବି ନାହିଁ । ଦଶଜଣଙ୍କ ଆଗରେ ସ୍ୱାମୀକୁ 'ତୁମକୁ ମୋର ଦରକାର ନାହିଁ' ବୋଲି କହିଦେଲା ମାତ୍ରେ କନ୍ଧ ଆଇନରେ ବିବାହ ବନ୍ଧନ ଛିଡିଯାଏ, ନାରୀ ମୁକ୍ତି ପାଇଯାଏ । ମନ ନ ମିଳିଲେ ନାରୀ ସହଜରେ ପୁରୁଣା ସ୍ୱାମୀକୁ ତ୍ୟାଗକରି ନୂତନ ସ୍ୱାମୀ ଗ୍ରହଣ କରିପାରେ । ଯୁବକଯୁବତୀଙ୍କ ପୂର୍ବରାଗ ବିବାହରେ ଚରିତାର୍ଥ ହୁଏ । ବିବାହର ଆନନ୍ଦ ଗୋଷ୍ଠୀର ଆନନ୍ଦ । ବିବାହ ମଧ୍ୟରେ ନବଦମ୍ପତି ଦେବତାର ଆଶୀର୍ବାଦ ଓ ଅନୁମୋଦନ ପାଆନ୍ତି, ଗୋଷ୍ଠୀର ମଣିଷ ବୋଲି ଗଣାଯାନ୍ତି, ଯୁକ୍ତ ହୁଅନ୍ତି ଗୋଷ୍ଠୀର ଆବହମାନ ଐତିହ୍ୟ ସହିତ । ଗୀତ ବୋଲାଯାଏ, ପୂଜା କରାଯାଏ ।

ପୂଜା କରାଯାଏ, କାରଣ ଏହି ଜନଗୋଷ୍ଠୀ ଦୃଶ୍ୟମାନ ଜଗତର ଅନ୍ତରାଳରେ ଏକ ଅଲୌକିକ ଜଗତର ଅସ୍ତିତ୍ୱ ଅଛି ବୋଲି ବିଶ୍ୱାସ କରେ । ସେମାନେ ଜାଗତିକ ଘଟଣାର ବ୍ୟାଖ୍ୟା ଓ କାରଣ ପ୍ରତ୍ୟାଶା କରନ୍ତି ଏବଂ ଯେହେତୁ କୌଣସି ବୁଦ୍ଧିଗ୍ରାହ୍ୟ କାରଣ ଖୋଜି ପାଆନ୍ତି ନାହିଁ, ତେଣୁ ଦୈବୀଶକ୍ତିରେ ଆସ୍ଥା ପୋଷଣ କରିଥାନ୍ତି । ତାଙ୍କ ଧର୍ମ ଦେବତାଙ୍କ ନାମ ଦର୍ମୁ, ଆଉ ଧରଣୀମାତା ଦର୍ତ୍ତନୀ । ଏତଦ୍‌ଭିନ୍ନ ଅଛନ୍ତି ଗ୍ରାମର ଦେବତା ମିଶାନ ମୁଣ୍ଡା, ଝାକର । ତାଙ୍କୁ ପୂଜା ଦିଆଯାଏ ଉପଯୁକ୍ତ

ସମୟରେ । ପୁରୋହିତ ପୂଜା କରେ, ମନ୍ତ୍ର ପଢ଼େ; ସୁବୃଷ୍ଟି ହେଉ, ଫସଲ ଭଲ ହେଉ, ବାଘ ନ ଖାଉ, ସମସ୍ତଙ୍କର କଲ୍ୟାଣ ହେଉ । ପୃଥିବୀ ପୁରୁଣା ହେଲାଣି, ଇତିହାସ ନୂତନ, ତଥାପି ପାହାଡ଼ ଉପରେ କନ୍ଧପରଜା ସମାଜରେ ପ୍ରଥମରୁ ଶେଷ ପର୍ଯ୍ୟନ୍ତ ଅଛନ୍ତି ସେହି ଦୁଇଜଣ; ଗୋଟିଏ ଦିଶାରୀ, ଅନ୍ୟଟି ବେଜୁଣୀ । ସେମାନେ ଧର୍ମର ପଣ୍ଡା, ପୁରୋହିତ; ଅଧିକନ୍ତୁ ସଂସ୍କୃତିର ଧାରକ ବାହକ ବି । ଏହି ଦୁଇଜଣ ଗୋଷ୍ଠୀପକ୍ଷରୁ ଅଲୌକିକ ଜଗତ ସହିତ ସମ୍ବନ୍ଧ ସ୍ଥାପନ କରନ୍ତି । ଯେହେତୁ ମଣିଷର ଯାବତୀୟ କାର୍ଯ୍ୟକଳାପ ପାଇଁ ଦୈବ-ଅନୁମୋଦନ ଲୋଡ଼ାହୁଏ, ତେଣୁ ଏ ଦୁହିଙ୍କ ବିନା ଗୋଷ୍ଠୀ ଚଳିପାରେ ନାହିଁ । ବେଜୁଣୀ ବୁଢ଼ୀ ବନ୍ଧ୍ୟା, ଜୀବନ ଓ ମୃତ୍ୟୁର ମଧ୍ୟବର୍ତ୍ତୀ ଜଗତରେ ସେ ଥାଏ । ତାର ଇଚ୍ଛାହେଲେ ଦେବତା ତା ଉପରେ ଅବତରଣ କରନ୍ତି । ଦେବତାଙ୍କ ବାହନ ସେ । ଦିଶାରୀ ପ୍ରାୟ ଗୃହବାସ କରୁଥିବା ସାଧାରଣ ମଣିଷ, କିନ୍ତୁ ସେ ଅଧିକନ୍ତୁ ଜ୍ୟୋତିଷ ଜାଣେ । ତାରାଙ୍କ ଅବସ୍ଥାନ ଦେଖି ସେ ଲଗ୍ନର ଶୁଭାଶୁଭ ନିର୍ଣ୍ଣୟ କରିଥାଏ । 'ଅମୃତର ସନ୍ତାନ' ଉପନ୍ୟାସରେ ସହସା ଯେତେ-ବେଳେ ବ୍ୟାଘ୍ର ଆକ୍ରମଣରେ ବେଜୁଣୀ ମରିଯାଏ, ସେତେବେଳେ ଦିଶାରୀର କର୍ଯ୍ୟଭାର ବଢ଼ିଯାଏ । ଗ୍ରାମବାସୀଙ୍କ ସ୍ୱାର୍ଥେ ତାକୁ ବାଘଡ଼ୁମାକୁ ବଶୀଭୂତ କରିବାକୁ ପଡେ; ବାଘଡ଼ୁମା ଅର୍ଥାତ୍ ବାଘଖିଆ ମଣିଷର ପ୍ରେତାତ୍ମା । ଏ ତ ବନର ସମ୍ବନ୍ଧ ଥିଲା ବିଜଣଙ୍କର, ଦୁହେଁ ଥିଲେ ଗାଁର ଧର୍ମବଳ । ଦିଶାରୀ ଯୋଗ ନିର୍ଣ୍ଣୟ କରେ ବେଜୁଣୀ ପୂଜା କରି କରି ନାଚେ; ଆଉ ସାଧାରଣ ମଣିଷର ମନୋବାଞ୍ଛା ପୂରଣ ହୁଏ । ବେଜୁଣୀର ସ୍ୱାମୀ ନ ଥିଲା କି ସନ୍ତାନ ନ ଥିଲା, ଦେବତାର ବାହନ ଏଇ ଏକଲା ସ୍ତ୍ରୀଲୋକଟିର ମୃତ୍ୟୁରେ ଗାଁର ସ୍ତ୍ରୀଲୋକମାନେ କାନ୍ଦିଥିଲେ । ଯଦିଓ ସେ ଏକୁଟିଆ, ତଥାପି କେବେ ନିଃସଙ୍ଗ ନଥିଲା; ସେ ଥିଲା ଗୋଷ୍ଠୀର ଅନ୍ୟତମ ଅନ୍ତରଙ୍ଗ ବ୍ୟକ୍ତି । ମଣିଷ ହୋଇ ଜନ୍ମ ହେଲେ କାନ୍ଦିବାର କାରଣର ଅଭାବ ନଥାଏ । ବେଜୁଣୀ ପାଇଁ କାନ୍ଦିବାକୁ ଯାଇ ସ୍ତ୍ରୀଲୋକମାନେ ସେହି ସବୁ ଭୁଲିଯାଇଥିବା କାରଣଗୁଡିକୁ ମନେ ପକାନ୍ତି, କାନ୍ଦନ୍ତି; ଏ କ୍ରନ୍ଦନ ଯେପରି ଆଉ ଶେଷ ହେବାକୁ ବୁଝେ ନ ।

ବନ୍ଦନଧାନର ପୂଜାହୁଏ ବାଆନ ପୂଜା । ଦଶାରୀ ଆୟୋଜନ କରେ, ବୃଦ୍ଧମାନେ ତାକୁ ସାହାଯ୍ୟ କରନ୍ତି । ଯୁବକଙ୍କ ପାଇଁ ଥାନ୍ତି ଯୁବତୀଗଣ, କିନ୍ତୁ ବୁଢ଼ାଙ୍କ ପାଇଁ କେବଳ କର୍ତ୍ତବ୍ୟ ଓ ନିଶା । ବେଜୁଣୀ ମନ୍ତ୍ର ପଢ଼େ । ମନ୍ତ୍ରରେ ଥାଏ ସ୍ୱଅଞ୍ଚଳର ପ୍ରଧାନ ପ୍ରଧାନ ସ୍ଥାନର ନାମ, ଆଉ ଯାବତୀୟ ଶୁଭକାମନାର ତାଲିକା—ପାଦରେ ଯେପରି କଣ୍ଟା ନ ଫୁଟେ, ବାଘ ଯେପରି କାହାକୁ ନ ଖାଏ, ରୋଗ ଯେପରି ନ ଧରେ, ଗୋରୁ ଯେପରି ନ ମରନ୍ତି ଇତ୍ୟାଦି ଇତ୍ୟାଦି । ଦଶାରୀର ମନ୍ତ୍ରରେ ଥାଏ ପୃଥିବୀର ସୃଷ୍ଟି, ଗୋଷ୍ଠୀର ଜନ୍ମ ଓ ପ୍ରସାର, ମାନବ ଜାତିର ବିସ୍ତାର ଓ ନାନା ବୃତ୍ତିର କଥା । ବେଜୁଣୀ ଓ ତା ଗୁଡ଼ୀ ସହକର୍ମୀଙ୍କ ନାଚରେ ସେହି ମନ୍ତ୍ରର ପାଠ ଯେପରି ଅଭିନୀତ ହୁଏ । ପୋଷାକ ନାହିଁ, ରଙ୍ଗମଞ୍ଚ ନାହିଁ, ରଙ୍ଗିନ ଆଲୋକର ବିଭ୍ରମ ନାହିଁ—ତଥାପି ବର୍ଷ ବର୍ଷ ଧରି ଚାଲିଛି ସଙ୍କେତ ଓ ରୂପକ ଛଳରେ ଏହି ଅଭିନୟ ନିରବଚ୍ଛିନ୍ନ । ଯେଉଁ ଭୂମି ଅନ୍ନ ଦାନ କରେ, ସେହି ଭୂମି ପ୍ରତି ପରମ କୃତଜ୍ଞତାର ଏହି ବନ୍ଦନା । ଫସଲ କଟା ପରେ ହୁଏ ବସନ୍ତୋତ୍ସବ—ଏକପକ୍ଷକାଳବ୍ୟାପୀ ହୋଇହୁଲ୍ଲା—ଭୋଜି ଓ ଶିକାର । କାମଦାମ ଭୁଲି ସମସ୍ତେ ଢ଼ୋଲକର ତାଳେ ତାଳେ ନାଚି ଉଠନ୍ତି । ଏହି ସମୟରେ ଏପରିକି ଶ୍ରମଦାସ ଗୋତିମାନେ ଘରକୁ ଫେରିବାକୁ ଛୁଟି ପାଇଥାନ୍ତି । ସ୍ତ୍ରୀଲୋକମାନେ ଉତ୍ସବ ଦିନ ଭୋରରୁ ଉଠନ୍ତି, ଘର ସଜାନ୍ତି, ଲୁଗା କାଚନ୍ତି, ବଣରୁ କାଠ ସଂଗ୍ରହ କରି ଆଣିଥାନ୍ତି ରାତିର ବହ୍ନ୍ୟୁତ୍ସବ ପାଇଁ । କୌଣସି ଯୁବକ ପ୍ରତିବେଶୀର ବାଡ଼ରୁ ବ୍ରତ ହିସାବରେ, ଅର୍ଥାତ୍ ଧର୍ମାନୁଷ୍ଠାନର ଏକ ଅଙ୍ଗ ଭାବରେ କିଛି ଜିନିଷ ଚୋରି କରେ । 'ଚୋରି' 'ଚୋରି' ଧ୍ୱନିରୁ ଉତ୍ସବ ଆରମ୍ଭ ହୁଏ । ଚାରିପଟେ ବାଜିଉଠେ, ଢ଼ୋଲରେ ତାଳ ଠୁକାଯାଏ, ଗୀତ ସୁରୁ ହୁଏ; ଯୁବତୀମାନେ ହାତରେ ହାତ ଛନ୍ଦି ନାଚନ୍ତି । ସେହି ନୃତ୍ୟର ସ୍ପନ୍ଦନରେ ଉନ୍ମତ୍ତ ହୋଇ ଅରଣ୍ୟର ପ୍ରାଚୀନ ଆତ୍ମା ଯେପରି ଜାଗି ଉଠେ । ପୂଜା, ଉତ୍ସବ ଓ ବ୍ରତ ଅନୁଷ୍ଠାନରେ ଗୋଷ୍ଠୀର ମଣିଷ ଯେପରି ଗୋଟିଏ ପରିବାରର ମଣିଷ । ଆକାଶରେ ଧର୍ମୁ, ତଳେ ଧର୍ତ୍ତିମା; ଏ ଦୁଇ ଦେବତାର ସନ୍ତାନ ଏମାନେ, ଗୋଟିଏ ଘରର, ଗୋଟିଏ ଗୋଷ୍ଠୀର ସବୁ ମଣିଷ । ଏହି ଭାବରେ ଅରଣ୍ୟ-ପାହାଡ଼ଘେରା

ଏହି ଅଞ୍ଚଳରେ କୃଷି ଓ ଶିକାରକୁ ଜୀବିକା କରି ନିଜସ୍ୱ ବୈଚିତ୍ର୍ୟ ଓ ସ୍ୱଜାତି ମିତବୋଧ ଘେନି ଏହି ମଣିଷମାନଙ୍କର ବସବାସ । ସେମାନଙ୍କ ଜୀବନପ୍ରେମ ପ୍ରକାଶ ପାଏ ପ୍ରେମ, ଭଲପାଇବା, ବିବାହ ଓ ପାରିବାରିକ ଜୀବନ ଯାପନରେ, ଆଉ ଅତିଲୌକିକ ଦୈବଶକ୍ତି ଉପରେ ତାଙ୍କ ନିର୍ଭରତା ରୂପ ଘେନେ ପୂଜା, ଧର୍ମାନୁଷ୍ଠାନ ଓ ଆଗୃହ ଆଚରଣରେ ।

କିନ୍ତୁ ଏହିସବୁ ଆଦିମ ବନଜାତିର ନିଜସ୍ୱ ଜଗତ ଅବକ୍ଷୟର ସମ୍ମୁଖୀନ ହୋଇଛି । ଗୋପୀନାଥ ମହାନ୍ତିଙ୍କର ଏହି ଦୁଇ ଉପନ୍ୟାସ ସେହି ଅବକ୍ଷୟ ଓ ସଙ୍କଟର ମହାକାବ୍ୟ । ଦିନେ ସେମାନେ ଥିଲେ ଗୋଟିଏ ଅଞ୍ଚଳର ଅଧିପତି, ଆଜି ରାଜ୍ୟଚ୍ୟୁତ-ଉତ୍ତରାଧିକାରହୀନ । ସର୍ବଂସହା ମାଆ ଧରିତ୍ରୀର ଜ୍ୟେଷ୍ଠପୁତ୍ର କନ୍ଧଙ୍କ ମୁଣ୍ଡ ନଷ୍ଟ, ପିଠି ବଙ୍କା, ମନ କ୍ଷତବିକ୍ଷତ, ପେଟ କ୍ଷୁଧାର୍ତ୍ତ । 'ଅମୃତର ସନ୍ତାନ' ଉପନ୍ୟାସରେ ବୁଢ଼ା ସରବୁ ସାଓଁତା ଭାବେ, ଦିନୁଦିନ ଦୁର୍ଭାଗ୍ୟ ବଢ଼ି ଚାଲିଛି । ସମତଳ ପ୍ରଦେଶର ଜମି ଗଲା, କନ୍ଧ ପାହାଡ଼ ଉପରକୁ ଉଠିଲା । ସେଠି ବି ଧରୁ ଗଲା ପରହାତକୁ । ଏବେ ଖାଲି ପରର ବୋଝ, ପରର ଜଞ୍ଜାଳ । ଜମି ଚାଲିଯାଇଛି, ଅନ୍ନ ବି ଅନ୍ତର୍ହିତ ହୋଇଛି । କନ୍ଧର ରାଜତ୍ୱ ଲୋପ ପାଇଛି, ଦେଶ ଛିନ୍ନଭିନ୍ନ ହୋଇଛି । ହୁଏତ ଦିନେ ମଣିଷ ଭୁଲିଯିବ କନ୍ଧ ବୋଲି କେହି କେଉଁଦିନ ଥିଲା ବୋଲି । ଆଧୁନିକ ସଭ୍ୟତାର ପ୍ରତୀକ ଲାଲ ସଡ଼କ ସେମାନଙ୍କ ଅଞ୍ଚଳକୁ ଧୀରେ ଧୀରେ ଡ଼ାକୁଛି ଠିକ୍ ଗୋଟାଏ ଉତ୍ତପ୍ତ ଛୁରିଭଳି । ସେଇ ସଡ଼କବାଟେ ଗାଡ଼ି ଗାଡ଼ି ଫସଲ ବାହାରକୁ ଚାଲିଯାଉଛି, ମଣିଷ ବି ଯାଉଛି ଆସାମର ଚା-ବଗିଚାକୁ । ଆଉ ଆସୁଛନ୍ତି ଏଇ ସଡ଼କଦେଇ ସଭ୍ୟତାର ପ୍ରେତ-ସନ୍ତତିବର୍ଗ—କୁଲି, ସାହୁକାର, ବେଶ୍ୟା ଓ ଉତ୍ପୀଡ଼କ ସରକାରୀ କର୍ମଚାରିବୃନ୍ଦ । ପରିଶ୍ରମ ପରେ ଗୋଟାଏ ସମୟରେ ଫସଲ କଟା ଦିନ ଆସେ ଅବଶ୍ୟ—ସେଦିନଟି ଥିଲା ଆନନ୍ଦର । ଆଜି କିନ୍ତୁ ଆନନ୍ଦ କାହିଁ ? ବୋଝ ବୋଝ ଫସଲ ତ ପଶୁଛି ସାହୁକାର ଘରେ । ଜମିରେ ହଳ ବୁଲିବା ପୂର୍ବରୁ ପେଟଜ୍ୱାଳାରେ ଅଗ୍ରିମ ଦାଦନ ନେଇଛି, ସାହୁକାର ସହିତ ସେତେବେଳଠାରୁ ଦରଦାମ ଠିକ୍ ହୋଇଯାଇଛି । ଏହି ଦର ବଜାର

ଦରଠାରୁ ଅନେକ କମ୍ ନଷ୍ଟପ୍ରାୟ । ଫସଲ କଟା ସଙ୍ଗେ ସଙ୍ଗେ ଅଧିକାରୀ ବା ସରକାରୀ କର୍ମଚାରୀ ବି ଜୁଟନ୍ତି । ଅମିନ ଦଳ ଗଲେ ତ ରବିନ ବା ରେଭେନେଜ ଦଳ ଆସିଲେ, ତାଙ୍କ ପରେ ଆସିଲେ ଫରେଷ୍ଟି ବା ବନବିଭାଗର କର୍ମଚାରୀ । କିଏ ଆସେ ଖଜଣା ଆଦାୟ କରିବାକୁ, କେହି ଆସେ ନିଷିଦ୍ଧ ଜିନିଷ ଖୋଜିବାକୁ ଘର ତଲାସ କରି । କାହାକୁ ଅସନ୍ତୁଷ୍ଟ କରାଯାଏ ନାହିଁ । ଏହି ଶିକ୍ଷିତ ଅମଲାମାନଙ୍କ ପାଇଁ ବିବାହ ଭୋଜିପରି ଆହାରର ଆୟୋଜନ କରିବାକୁ ହୁଏ । ଡମପଡ଼ା କି ଖ୍ରୀଷ୍ଟିୟାନ ପଡ଼ାରୁ ବି ଯୁବତୀ ସ୍ତ୍ରୀଲୋକ ଲୋଡ଼ା ରାତିରେ ତାଙ୍କ ବଙ୍ଗଳାରେ — ଆହାର ନିଦ୍ରା ଓ ମୈଥୁନର ସୁବ୍ୟବସ୍ଥା କରିବାକୁ ହେବ । କେବଳ ଅଧିକାରୀମାନଙ୍କ ପାଇଁ ଉପହାର ବ୍ୟବସ୍ଥା କଲେ ଚଳିବ ନାହିଁ । ଉପହାର ଚାହାନ୍ତି ଚପରାଶି-କିରାଣି, ଚାକର ପୁଝାରୀ, ଜୋଗାଯଫାକରାଣୀ, ପାଣିବୁହାଳି, ଏପରିକି ତାଙ୍କ ପୋଷା କୁକୁର ବି । କନ୍ଧ ପରଜା ଫସଲ ଉତ୍ପାଦନ କରନ୍ତି, ଖାଆନ୍ତି କିଏ ? କଦଳୀ ପାଚେ, କାଟେ କିଏ ? କୁକୁଡ଼ା ଡିମ୍ବ ଦିଏ କାହାଲାଗି ? ବିନା ମଜୁରିରେ ଅଧିକାରୀଙ୍କ ଚାକରର କାମ କରିବାକୁ ହୁଏ । ମନରେ ଜଳି ଉଠିବାକୁ ଉଦ୍ୟମ ହୁଏ ଚାପା ବିଦ୍ରୋହର ନିଆଁ ।

ମଣିଷର ଅଗ୍ରଗାମୀ ବାହିନୀ ଏହି କନ୍ଧଜାତି । କନ୍ଧ-କମାର ଆକରିକ ଲୁହା ଆଉଟି ଟାଙ୍ଗିଆ ଗଢ଼େ । ସେହି ଟାଙ୍ଗିଆ ଦ୍ୱାରା ସେମାନେ ଜଙ୍ଗଲ କାଟନ୍ତି, ପଥ ସଫା କରନ୍ତି, ଚାଷଜମି ବି ପରିଷ୍କାର କରିଥାନ୍ତି । ହାଣିଥିବା ଗଛରେ ଖରାଦିନେ ନିଆଁ ଲଗେଇ ଦିଅନ୍ତି, ପାଉଁଶ ଖତ ହୁଏ । ପର୍ବତର ଅରମା ସଫା କରି ଚାଷ ହୁଏ । ପ୍ରଥମ ବର୍ଷ ମାଣ୍ଡିଆ, ଦ୍ୱିତୀୟ ବର୍ଷ ହରଡ଼, ଜଡ଼ା, ଅଲ୍‌ସି, ତୃତୀୟ ବର୍ଷ ସୁଆଁ । ସୁଆଁ ଧାନ । କନ୍ଧ କ୍ଷେତ ତିଆରି କରେ, ପଛେ ପଛେ ଆସେ 'ସଭ୍ୟତା' । ଅର୍ଥାତ୍ ସାହୁକାର ଆସେ, ଶୁଣ୍ଢି ଆସେ, ଆସନ୍ତି ବି ଧୋବ ଧାଉଳିଆ । ସେମାନେ ମଦ ବିକନ୍ତି, ମହାଜନ କରନ୍ତି, ଚାଲାକି କରି କନ୍ଧକୁ ଠକି ଜମି ହସ୍ତଗତ କରି ନିଅନ୍ତି । କନ୍ଧ ଚଢ଼େ ଉପରକୁ । ବନ୍ଧକ ରଖିବ କ'ଣ କନ୍ଧ ଜାଣେନା, ବୁଢ଼ା ଆଙ୍ଗୁଳିର ଟିପଦେବାର ମହିମା ବି ସେ

ବୁଝେ ନାହିଁ । ହୁଏତ ନିଜର ଜମି ହରାଇ ଅନ୍ୟ ଜମି ସଂଧାନରେ ସେ ଆହୁରି ଉଚ୍ଚ ପାହାଡ଼ ଚଢ଼େ, ନହୁବା ସାହୁକାରର ଗୋତି ହୋଇ ସେହି ପୁରୁଣା ଜମି ଚଷେ । କାହାର ଧନ କାହାକୁ କରଜ ଦେଇ ସାହୁକାର ସୁଧପାଏ । "ବଣ ଭିତରେ ଉଡ଼ ଉଡ଼ ବୁଲୁଛି ସାହୁକାର ତନ୍ତ୍ରର ଗୁଣ୍ଡୁରି (ପକ୍ଷୀଧରା) ଜାଲ, ତାହାର ନାଁ ସଭ୍ୟତା ।" ସଭ୍ୟତା ବାଧ୍ୟ-ବାଧ୍ୟ, ସ୍ତ୍ରୀ ଅସି ଜକୁରତାରେ କନ୍ଧଙ୍କ ହାତଗୋଡ ବନ୍ଧା । ନୂତନ ଦୁନିଆକୁ ସେମାନେ ଭୟ କରନ୍ତି, ସବୁଠାରୁ ବେଶି ଭୟ ତାଙ୍କର ଦଲାଲକୁ, ହିସାବ ଖାତାକୁ, କାଗଜର ଲେଖାକୁ । ଏହି ଜନଜାତିର ମିଳନକେନ୍ଦ୍ର ଯେଉଁ ହାଟ ବା ମେଳା, ସେଠି ବି ଉପସ୍ଥିତ ହୋଇଯାଏ ନିଶୁଆ କୁଣ୍ଡଳିଆ ପେଟୁଆ ସାହୁକାର । ପାଙ୍କରେ ଟଙ୍କାର ଥଳି ଆଉ ବଡ଼ ସାନ ମାଣ ଓ ପେଡ଼ି । କିଣିଲାବେଳକୁ ବଡ଼ଟିରେ, ବିକିଲାବେଳକୁ ସାନଟାରେ । ନିର୍ବୋଧ ଆଦିବାସୀମାନଙ୍କୁ ଠକାଇ ଲାଭବାନ୍ ହୁଅନ୍ତି ବାହାରର ବ୍ୟବସାୟୀଗଣ—ରଙ୍ଗିନ କାଚର ମାଳି ଓ ଚୁଡ଼ି ଆଦି ଶସ୍ତା ମନୋହାରୀ ଜିନିଷ ବିକୁଥାନ୍ତି ସେମାନେ । ଏଇ ଯେ ଦିଶାରୀ ଓ ବେଜୁଣୀ ପୂଜାଦିଅନ୍ତି, ତା'ର ଅନ୍ୟତମ କାରଣ ହେଉଛି ଏହି ଜନ-ଗୋଷ୍ଠୀର ମଣିଷମାନେ ଚାହାନ୍ତି ସାହୁକାର, ବନବିଭାଗ କର୍ମଚାରୀ ଓ ଖଜଣା ଆଦାୟ କରୁଥିବା ଅଫିସରଙ୍କ ହାତରୁ ଈଶ୍ୱର ତାଙ୍କୁ ରକ୍ଷା କରନ୍ତୁ । ବିପଦ ନ ପଡ଼ୁ, ମୃତ୍ୟୁ ନ ଆସୁ—ଠାକୁର ରକ୍ଷା କରନ୍ତୁ ।

ସାହୁକାରମାନଙ୍କ ଶୋଷଣପଦ୍ଧତି ବିଷୟରେ ଗୋଟିଏ ଶ୍ରେଷ୍ଠ ଉପାଖ୍ୟାନ ଅଛି 'ଅମୃତର ସନ୍ତାନ' ଉପନ୍ୟାସରେ । ଜଗନ୍ନାଥ ସାଓ ନାମକ ସାହୁକାର ପାଖରେ ସୁଗ୍ରିକନ୍ଧ ଗୋତି ଖଟୁଥିଲା । ଗୋତି କିଣାଗୋଲାମ । ଦଶଟଙ୍କା କରଜ ନେଇଥିଲା, ସେହି କାରଣରୁ ସୁଗ୍ରିକୁ ବିନା ବେତନରେ ଦୁଇବର୍ଷ ଗୋତି ହୋଇ ଖଟିବାକୁ ପଡ଼ିବ । ସାହୁକାରର ଛେଳି ଜଗିବା ତାର କାମ । ପ୍ରକୃତରେ ସାହୁକାର ଦୋଷରୁ ଦିନେ ଚିତାବାଘ ସବୁ ଛେଳି ମାରିଦେଲା । ସାହୁକାର ସୁଗ୍ରିକୁ ଦାୟୀକଲା ଓ ଛେଳିର ଦାମ୍ ତାର ଋଣ ହିସାବରେ ପଡ଼ିଲା । ଛେଳି-ଗୁଡ଼ିକ ପ୍ରାପ୍ତ ହୁଆଥିଲେ । ସେଗୁଡ଼ିକ ବଡ଼ ହୋଇଥିଲେ ଯେତେ ଦାମ୍

ହୋଇଥାନ୍ତା । ତାହାଙ୍କି ଅନ୍ଦାଜ କରିଗଲ ଓ ତଦନୁସାରେ ସୁଗ୍ରିର ଋଣ ଘର ବଢ଼ିଲା । ଚରବର୍ଷଠାରୁ ଆଗରୁଣ ପାଞ୍ଚଟଙ୍କା ଓ ଛେଳଦାମ୍ ୫୫ ଟଙ୍କା ପାଇଁ ତାକୁ ଗୋତି ଖଟିବାକୁ ପଡ଼ିବ ପନ୍ଦର ବରଷ । ଏହି କଳ୍ପିତ ଷାଠିଏ ଟଙ୍କା ପାଞ୍ଚଟଙ୍କା ହାରରେ ବାର ବର୍ଷରେ ପରିଶୋଧ ହୋଇଯିବା କଥା । କିନ୍ତୁ ଜଗନ୍ନାଥ ସାଁଓ ବୁଝାଏ, ଛେଳିବିକା ଟଙ୍କା ସୁଧ ଲଗାଇ ସେ ତିନଗୁଣ କରିପାରିଥାନ୍ତା, ସେହି ଅନୁସାରେ ଗୋତିର ମିଆଦ ହେବା ଉଚିତ କୋଡ଼ିଏ ବର୍ଷ; ସେ ବରଂ ଦୟାପରବଶ ହୋଇ ପନ୍ଦର ବର୍ଷରେ ରାଜି ହୋଇଛି । ଷ୍ଟାମ୍ପ କାଗଜରେ ସେ ମଧ୍ୟ ସୁଗ୍ରିର ଅଙ୍ଗୀକାର ଲେଖାଇ ନିଏ । ସୁଗ୍ରିର ଅନୁରୋଧକ୍ରମେ ତା ପରିସ୍ଥିତି ବିଚାର ଲାଗି ପଞ୍ଚାୟତ ବସେ । ଯୁବକମାନେ ପ୍ରତିବାଦ କଲେ, ଛେଳିକୁ ବାଘ ଖାଇଛି, ସୁଗ୍ରିର ଫେରିବା ପୂର୍ବରୁ ସାହୁକାର ଛେଳିଙ୍କୁ ଗ୍ରହଣ କଲ କାହିଁକି, ସେଥିପାଇଁ କ୍ଷତିପୂରଣର ପ୍ରଶ୍ନ ଉଠୁନାହିଁ । ବୁଢ଼ାଏ କହିଲେ ଗୋତିର କାମ ଛେଳି ଜଗିବା, ସେ ସେହି କାର୍ଯ୍ୟରେ ଅବହେଳା କରିଛି । ଦ୍ୱିତୀୟତଃ ଗୋତି ଦାସତ୍ୱ ଦ୍ୱାରା ପରିଶୋଧ ନ କଲେ ସାହୁକାରର କ୍ଷତିପୂରଣ ହେବ କେମିତି ? ତୃତୀୟତଃ ସାହୁକାର ଷ୍ଟାମ୍ପକାଗଜରେ ଟିପଚିହ୍ନ ନେଇଛି । କନ୍ଧ ମରିବାକୁ ଭୟ କରେ ନାହିଁ, କିନ୍ତୁ ସେ କଥାର ଖିଲାପ୍ କରିପାରିବ ନାହିଁ । ଏତଦ୍ଭିନ୍ନ ସାହୁକାର ବଡ଼ଲୋକଙ୍କୁ ଟଙ୍କା ଦିଅନ୍ତି, ତାଙ୍କପାଇଁ ସୁଖାଦ୍ୟ ଯୋଗାଡ଼ କରନ୍ତି; ଦରକାର ହେଲେ ଦଶ କୋଡ଼ିଏ ଯୁବତୀ ଖୋଜି ଆଣନ୍ତି; ବଡ଼ଲୋକମାନେ ଓ ଅଧିକାରୀମାନେ ସେହି ସାହୁକାର ଘରେ ରହନ୍ତି । ସୁତରାଂ ତାଙ୍କ ମହତ ବିରୁଦ୍ଧତା କରି ଦରିଦ୍ର ସହାୟହୀନ କନ୍ଧମାନେ ବଞ୍ଚି ପାରିବେ ନାହିଁ । ଏହି ଅଧିକାରୀମାନେ ଘରତଲାସ କରିବା ସୂତ୍ରରେ ଝିଅବୋହୂଙ୍କ ସର୍ବାଙ୍ଗରେ ହାତମାରି ସମ୍ଭ୍ରମ ନାଶ କରନ୍ତି, କେବେ କେବେ ବା ଧର୍ଷଣ କରିଥାନ୍ତି । ଫାରେଷ୍ଟ ମହାପ୍ରଭୁଗଣଙ୍କୁ ଦେଖିଲେ ପିଲାଏ ପଳାନ୍ତି, ଝିଅ ବୋହୂ ଆତ୍ମଗୋପନ କରିବାକୁ ପ୍ରାଣପଣେ ଚେଷ୍ଟା କରନ୍ତି । ଜଙ୍ଗଲ ପୋଡ଼ ପାଇଁ ଏହି ବନକର୍ମଚାରୀମାନେ ପ୍ରଚଣ୍ଡ ତିରସ୍କାର କରିଥାନ୍ତି ଓ ସେହି ତିରସ୍କାରର ଯଥେଷ୍ଟ ଭେଟି ହିସାବରେ ଆଦାୟ କରି ନିଅନ୍ତି ଛେଳି, ଘିଅ ଓ କୁକୁଡ଼ା ତାଙ୍କ ପ୍ରଭୁମାନଙ୍କ ଆହାର ଉଦ୍ଦେଶ୍ୟରେ ।

ସକାଳେ ଫାରେଷ୍ଟ କନ୍ଧମାନଙ୍କୁ ଗାଧୋଇ ପଡ଼ି ଆସିବାକୁ କହେ । ସ୍ନାତ କନ୍ଧମାନଙ୍କୁ କୁହାଯାଏ, ସେମାନେ ତରୁଗ୍ରନ୍ତ ଠାକୁରଙ୍କୁ ଛୁଇଁ କହନ୍ତୁ କିଏ କେତେ ବଣ ପୋଡ଼ୁଛନ୍ତି । ଦେବବିଶ୍ୱାସୀ ସରଳ ମଣିଷଗୁଡ଼ିକ ଅକପଟରେ ସବୁ ସତ କହି ଦିଅନ୍ତି । କଣ୍ଢେଇ ତରୁପନ୍ତ ଫାରେଷ୍ଟଙ୍କ ମୁଣ୍ଡରେ ପଡ଼ନ୍ତି, କିନ୍ତୁ ତାଙ୍କର ପ୍ରସାଦରୁ ଜମି ନ ଦେଖି, ଜଙ୍ଗଲ ପରିଦର୍ଶନ ନ କରି ନିର୍ଭୁଲ ରିପୋର୍ଟ ଓ କ୍ଷତିପୂରଣର ହିସାବ ପ୍ରସ୍ତୁତ ହୋଇଯାଏ । ଚେନ୍ ଟଣାଯାଏ ନାହିଁ, ସର୍ଭେ କରାଯାଏ ନାହିଁ, ଏକ ମାସର କାମ ପାଞ୍ଚମିନିଟରେ ଶେଷ । ପ୍ରସ୍ତୁତ ହୋଇଯାଏ ବଣର କ୍ଷେତ୍ରଫଳ ଓ ପୋଡ଼ା ଗଛର ଆକୃତି ପ୍ରକୃତି ସମ୍ବଳିତ ନିଖୁଣ ରିପୋର୍ଟ । ଟଙ୍କା ନ ଦେଲେ ରିପୋର୍ଟ ଚାଲିଯିବ ଉପରକୁ, ଆଇନ ଅଦାଲତର ଭୟ ଦେଖାଏ ଫାରେଷ୍ଟ । ସୁତରାଂ ଗାଁରେ ଟଙ୍କା ସଂଗ୍ରହର ପର୍ବ ଆରମ୍ଭ ହୁଏ, କନ୍ଧର ଅନ୍ଧାରଘରୁ ବାଉଁଶନଳୀରୁ ଟଙ୍କା କଢ଼ାଯାଏ, "କାଠୁଆ ହୋଇଥିବା ଦେହର ଝାଳ, ହୃତପିଣ୍ଡର ରକ୍ତ, ଟଙ୍କା କେଇଟି ।" ଦିଆନେବା ଶେଷ ହୁଏ । ଯିବାବେଳେ ଗୋଟିଏ ଦୋପଇସି ଫୋପାଡ଼ି ଦେଇ ଫାରେଷ୍ଟ ଗାଁବାଲାଙ୍କୁ କହିଯାଏ, 'ନେ ବେ ଶଳା ସାଓଁତା ଇନାମ ନେ,' ଇତ୍ୟାଦି । ଗାଁବାଲା ଇନାମ ଗ୍ରହଣ କରନ୍ତି ! ଏହି ଭାବରେ ସାହୁକାରଙ୍କ ବେସରକାରୀ ପଦ୍ଧତିରେ, ରାଜକର୍ମଚାରୀଙ୍କ ସରକାରୀ ପଦ୍ଧତିରେ ଶୋଷିତ ହୋଇଥାନ୍ତି ଏହି ସରଳ ପ୍ରାଚୀନ ଜନସମଷ୍ଟି । ଅବକ୍ଷୟର ଘୁଣପୋକ କନ୍ଧ-ସମାଜ ଜୀବନରେ ପଶିଛି । ଯେଉଁମାନଙ୍କ ଦ୍ୱାରା ଏମାନେ ଶୋଷିତ ହୋଇଥାନ୍ତି, ଅନେକ ସମୟରେ ତାଙ୍କୁହିଁ ଅନୁକରଣ କରିବାକୁ ଚାହାଁନ୍ତି । ଆଦିବାସୀର ବାବୁ ହେବାକୁ ଇଚ୍ଛାହୁଏ, କୌପୀନ ଉପରେ ସେ କୋଟ ଚଢ଼ାଏ, ଧୁଙ୍ଗିଆ ବଦଳରେ ବିଡ଼ିଖାଏ, କାନରେ କୁଣ୍ଡଳ ପିନ୍ଧେ, ମୁଣ୍ଡରେ ପଗଡ଼ି । ସାବୁନ୍ ଧୁଆ ଶାଢ଼ୀ ପିନ୍ଧି କନ୍ଧଯୁବତୀ ବାହାର ଜଗତର ମଣିଷଙ୍କୁ ଆକୃଷ୍ଟ କରନ୍ତି । ଯେଉଁମାନେ ବେଶ୍ୟା କଥାର ମାନେ ବୁଝନ୍ତି ନାହିଁ, ତାଙ୍କ ଦେହରେ ଦେଖା ଦେଇଛି ଯୌନରୋଗ । କନ୍ଧ ଅଭିଧାନରେ ବେଶ୍ୟା ଶବ୍ଦର ପ୍ରତିଶବ୍ଦ ନାହିଁ, କିନ୍ତୁ ଜାତିକ୍ଷୟକାରୀ ରୋଗ ନିଆଁ ପରି ଏବେ ମାଡ଼ି ଚାଲିଛି । ଉଦ୍ଦେଶ୍ୟହୀନ କାମକ୍ଷୁଧା ଫଳରୁ ଜନ୍ମ ହେଉଛନ୍ତି

ସଙ୍କର-ମଣିଷ—"ଯାହାଙ୍କ ଗଠନ ପାଇଁ ବସ୍ତୁବସ୍ତୁ ନ ଥିଲା କି ଯୋଜନା ନ ଥିଲା । ମସ୍ତିଷ୍କ ଦୁର୍ବଳ, ମନରେ ବିକଟ ପାଶବିକତା ...... ଚେତନାରେ ବୈଶିଷ୍ଟ୍ୟହୀନ—ସାହାବ ଆଖିପରି ଆଖି, ବ୍ରାହ୍ମଣ କପାଳ, କନ୍ଧ ଥୋମଣି, ଗଦବା ଭ୍ରୂଲତା !" ସନ୍ତୀନାଥ ପାଖରେ ଶଗଡ଼ କେବଳ ରୋଜଗାରର ଉପାୟ ନୁହେଁ, ଶଗଡ଼ ଚଳାଇ ସେ ଯେତେଦୂର ଯାଏ, ସେତେ ତାର ଚୈତନ୍ୟ ପ୍ରସାରିତ ହୁଏ । ଅନ୍ୟ ପକ୍ଷରେ କିନ୍ତୁ ହାଗୁଣା ଶଗଡ଼ କିଣିବାକୁ ଚାହେଁ, କେବଳ ପଇସା ପାଇଁ ଓ ବ୍ୟବସାୟ ପାଇଁ । ଶଗଡ଼-ଚାଷ-ବ୍ୟବସାୟ ବେପାର । ସେ ପ୍ରସ୍ତୁତ ହେଉଥିବ । ସେ ସ୍ୱପ୍ନ ଦେଖେ, ବେକରେ ସୁନାହାର ହେବ, ଘନେ ପ୍ରଚୁର ଟଙ୍କା ହେବ, ସେ ସାହୁକାର ହେବ; କାନରେ କୁଣ୍ଡଳ, ମୁଣ୍ଡରେ ଟୋକା ଓ ଦେହରେ କୋର୍ଟକାମିଜ । ଏହି ସ୍ୱପ୍ନ ମଧ୍ୟରେ ନିହିତ ରହିଯାଏ କନ୍ଧଙ୍କ ନୈତିକ ଅଧଃପତନର ପ୍ରମାଣ ।

'ଅମୃତର ସନ୍ତାନ' ଉପନ୍ୟାସର ଆରମ୍ଭରୁ ଅନ୍ତର ପ୍ରତି ସରବୁ ସାଓଁତାର ଦେହାନ୍ତ ହୁଏ । ତା ସ୍ଥାନରେ ସାଓଁତା ବା ସର୍ଦ୍ଦାର ହୁଏ ସରବୁ ପୁଅ ହଉଡୁ । ଉପନ୍ୟାସଟି ପ୍ରଥମ ସ୍ତରରେ ହଉଡୁ, ତାର ସ୍ତ୍ରୀ ପୁୟୁ, ଭଉଣୀ ପୁବୁଲି ଓ ଦିକାଲେଞ୍ଜୁର ଗଳ୍ପ । ଅବଶ୍ୟ ଉପନ୍ୟାସଟି ଶେଷପର୍ଯ୍ୟନ୍ତ ପରିବାରର ବୃତ୍ତ ଅତିକ୍ରମ କରି ଗୋଷ୍ଠୀର ଅବକ୍ଷୟ ଓ ବିନାଶର କାହାଣୀ ହୋଇଉଠେ । ହାଗୁଣା ପ୍ରତି ଅଳ୍ପବୟସରୁ ପୁବୁଲି ଆକୃଷ୍ଟ ହୋଇଥିଲି, ସେମାନଙ୍କ ବିବାହକୁ ଅନୁମୋଦନ କରିଥିଲି ବି ସରବୁ ସାଓଁତା । ହାଗୁଣା ବର୍ତ୍ତମାନ ପାଖ ବଳକାର ଗାଁର ସାଓଁତା । କିନ୍ତୁ ମିଚିଗାଁରୁ ଆସିଥିବା ବେଶୁ କନ୍ଧର ପ୍ରାଣଉଛୁସା ବଂଶୀସ୍ୱନ ଓ ଜହ୍ନ ପୁବୁଲିକୁ ଅନ୍ୟମନା କରିଦେଲା; ହାଗୁଣା ପିଲାଦିନର, ବେଶୁ କନ୍ଧ ଯୌବନର । ପ୍ରଥମେ ପୂର୍ବରାଗ; ମନ ଦିଆନିଆ ହେଲା ଅବିକଳ ହଜାର ବର୍ଷ ତଳର ସେଇ ପୁରୁଣା ଢଙ୍ଗରେ । ଦିଶାରି ଦୂରରୁ ଦେଖି ଏ ଦୁହିଁଙ୍କ ପ୍ରେମକୁ ଅନୁମୋଦନ କରେ, କାରଣ ସେ ତାର ଜ୍ୟୋତିଷ ଗଣନା ଅନୁସାରେ ଜାଣିଥିଲା ହାଗୁଣା ସହିତ ପୁବୁଲିର ବିବାହ କେବେ ସୁଖର ହୋଇ ପାରିବ ନାହିଁ । ହାଗୁଣା ବି ବିବାହ କରିବାକୁ ଡେରି ଡେରି କରୁଥିଲା, ସେ ଧାଂଡ଼ା ବା ଅବିବାହିତ ଜୀବନର ମୁକ୍ତ ସ୍ଥିତି

ଉଦ୍ଘାଟନ କରିବାକୁ ବା ବିବାହିତ ଜୀବନର ବନ୍ଧନରେ ଏତେ ଶୀଘ୍ର ପଡ଼ିବାକୁ ଚାହିଁ ନଥିଲା । କିନ୍ତୁ ଏ ମଧ୍ୟରେ ପୁତୁଲି ମନେ ମନେ ବିବାହ କରି ସାରିଛି ବେଣୁକୁ, ଆଜି ଅନାସ୍ୱାଦିତ ପୂର୍ବ ଅନୁଭୂତି ସ୍ରୋତରେ ଭାସି ଚାଲିଛି । କନ୍ଧକୁମାରୀଙ୍କ ସରଳ ପ୍ରେମ ବି ବଳିଷ୍ଠ ଦେହର ପ୍ରେମ । ଦେହ ମୂଲ୍ୟରେ ଜୀବନ ମପାଯାଏ । ନାରୀ ହେବ ଜନନୀ, ପୁରୁଷ ହେବ ଜନକ । ଦୁହେଁ ମିଶି ସନ୍ତାନସନ୍ତତିଙ୍କ ଦ୍ୱାରା ଐତିହ୍ୟ ପରଂପରାକୁ ପ୍ରବାହିତ ରଖିବେ । କନ୍ଧ ସମାଜରେ ନାରୀର ଇଚ୍ଛା ହିଁ ଶେଷକଥା । ତେଣୁ ବେଣୁ ଓ ପୁତୁଲିର ବିବାହ ହୋଇଯାଏ । ଆଲୋକ ଓ ପ୍ରତିବିମ୍ବ ପରି ସେ ଦୁହେଁ ଏକାତ୍ମ ଓ ସୁଖୀ । ହାଗୁ ଁ ଶାର ମନ ଉଦାସ ହୋଇ ଉଠେ । ପୁତୁଲିର ଚିନ୍ତାଭାବନା ମନରୁ ଦୂର କରିବାକୁ ଚେଷ୍ଟାକରେ ସେ । କିନ୍ତୁ ପ୍ରତ୍ୟାଖ୍ୟାନର ଅପମାନବୋଧ ଓ ତିକ୍ତତା ମନରୁ ‧ଯାଏ ନାହିଁ କେବେ ।

ହିଉଡ଼ୁର ବିକାଲେଞ୍ଜୁ । ନିଃସଙ୍ଗ ଜୀବନ । ସ୍ତ୍ରୀକୁ ବାଘ ଖାଇଛି । କନ୍ଧରୀତି ଅନୁଯାୟୀ ଲେଞ୍ଜୁ ଏକମାତ୍ର ସେହି ନାରୀକୁ ହିଁ ବିବାହ କରି ପାରିବ ଯାହାର ସ୍ୱାମୀ ବାଘ କବଳରେ ପଡ଼ି ମରିଥିବ । ତାହା ଲେକଙ୍କ ସ୍ତ୍ରୀଙ୍କ କଥା ମନେ ପଡ଼ିଲେ ସେ ଭାବେ କାହାକୁ ବାଘ ଖାଇଲେ ସେ ନିଜ ପସନ୍ଦର ସ୍ତ୍ରୀଟିଏ ପାଇ ପାରନ୍ତା— କିନ୍ତୁ କାହାକୁ ବାଘ ଖାଏ ନାହିଁ, ସହଜରେ ଘଟେ ନାହିଁ ମନୋମତ ଘଟଣା । ଭାଇ ପରବୁର ମୃତ୍ୟୁପରେ ସେ ଏକୁଟିଆ ହୋଇପଡ଼େ । ଭାଇ ପୁଅ ହିଉଡ଼ୁ ଯେ ସାଆଁଟା ହୋଇଛି ଏକଥାକୁ ସେ ମନେ ମନେ ସ୍ୱୀକାର କରିପାରେ ନାହିଁ, ହିଉଡ଼ୁ ବି ସହ୍ୟ କରିପାରେ ନାହିଁ ଏହି ପିତୃବ୍ୟଟିକୁ । ସ୍ୱର୍ଗଗତ ପ୍ରଥର ବାପ ଓ ସାଓଁଟା ହୋଇ ହିଉଡ଼ୁର ମୁଣ୍ଡ ଗରମ ହୋଇଯାଇଛି ଅବଶ୍ୟ; ସେ ଦୁର୍ମଦ ଓ ବଳଦର୍ପୀ ହୋଇ ଉଠିଛି । ଅଥଚ ଲେଞ୍ଜୁ ହୋଇଛି ଅଜା । କିନ୍ତୁ ଶରୀରଟି ତାର ଯୁବକ ଶରୀର ପରି ଗରମ ଅଛି, ମନ ବି ରହିଛି ଉଦ୍ଦାମ । କିନ୍ତୁ ହାୟ ! ଯୁବତୀ ଏ ତାଙ୍କୁ ସଂଗୀ କରିବାକୁ ଚାହାନ୍ତି ନାହିଁ, ଯୁବକମାନେ ବି ତାକୁ ଈର୍ଷା ଆଖିରେ ଦେଖନ୍ତି ନାହିଁ । ସେ ଯେପରି ଥାଇ ବି ନାହିଁ— କଂପୁରୁଷଟିଏ ମାତ୍ର; ପୁରୁଷ

ନୁହେଁ । ସମସ୍ତଙ୍କର ସବୁ ଅଛି, ତାର କିଛି ନାହିଁ; ଏପରିକି ଘର ନାହିଁ । ବାଲ୍‌ମୁଣ୍ଡା ଡମ୍ବର ସ୍ତ୍ରୀ ସୋନାଦେଈ ପ୍ରତି ଲେଞ୍ଜୁ ଆକୃଷ୍ଟ । କି ରୂପ ! କି ସୌନ୍ଦର୍ଯ୍ୟ ! ସେ ଏକାନ୍ତରେ ତାକୁ ଦେଖି ମୁଗ୍ଧ ହୁଏ । ସୋନାଦେଈ ବି ଯେପରି କହିବାକୁ ଚାହେଁ, ତାର ସ୍ୱାମୀ ଅକ୍ଷମ, କିନ୍ତୁ ତାର ଦେହ ମନ ଯୌବନ ଅଛି, ସେ ଆଶ୍ରୟ ଲୋଡ଼େ । ସେ ବି ତୃଷାର୍ତ୍ତ, ସେ ବି ଲେଞ୍ଜୁ ପ୍ରତି ଅର୍ଥପୂର୍ଣ୍ଣ ଅପାଙ୍ଗ ଢ଼ାଳେ, ଲୋଭାଏ । ସୋନାଦେଈ ଯେପରି ମନେ କରେ ବାଲ୍‌ମୁଣ୍ଡା ତାର ସ୍ୱାମୀ ନୁହେଁ ବନ୍ଧନ ମାତ୍ର, ସେପରି ସୋନାଦେଈର ସାନ୍ନିଧ୍ୟ ଲେଞ୍ଜୁ ମନରେ ନିଆଁ ଲଗାଇଦିଏ । ଲେଞ୍ଜୁ ସୋନାଦେଈର ଘରକୁ ଯାଏ । ଯୁବକଯୁବତୀଙ୍କ ଉଦ୍ଦାମତା ସ୍ମରଣ କରି ଲେଞ୍ଜୁ ସୀମା ଅତିକ୍ରମ କଲେ ସୋନାଦେଈ ମିନତି କରି ଓ ବାଧାଦିଏ । ଡମ୍ବ ସ୍ତ୍ରୀଲୋକଗୁଡ଼ିକ ସ୍ୱଭାବତଃ ସ୍ୱୈରିଣୀ ହେଲେହେଁ ଏହି ସୋନାଦେଈ ମଧ୍ୟରେ ଏକ ଅପୂର୍ବ କୋମଳତା ବର୍ତ୍ତମାନ । ତାର ନରମ ଆପତ୍ତି ଓ ପ୍ରତିବାଦରୁ ଲେଞ୍ଜୁ ଜାଣେ ଯେ ଏ ନାରୀ ସମ୍ମତ, କିନ୍ତୁ ସେ ନିଜେ ସମ୍ଭୋଗ ପାଇଁ ଉତ୍ସୁକ ହେଲେହେଁ ସମାଜପତିର ପ୍ରତିଷ୍ଠା ହରାଇବାକୁ ଚାହେଁ ନାହିଁ । ଈପ୍‌ସିତାକୁ ପାଇବା ପାଇଁ ତାର ପ୍ରତ୍ୟେକଟି ରକ୍ତକଣିକା ଅବଶ୍ୟ ଉଦଗ୍ରୀବ, କିନ୍ତୁ ଅନୁପଯୋଗୀ ଗାମ୍ଭୀର୍ଯ୍ୟ ତାକୁ ବାଧାଦିଏ । ଆଉ ଏଣେ ଦିନବେଳେ ଏହି ପ୍ରୌଢ଼ ଲେଞ୍ଜୁକୁ ଦେଖିଲେ ସୋନାଦେଈର ମନ ଘୃଣାରେ ଭରିଯାଏ, ଜିଭରେ ଲାଗେ କାଦୁଅର ବିସ୍ୱାଦ । ତଥାପି ସ୍ୱାମୀ ବାଲ୍‌ମୁଣ୍ଡା ପ୍ରତି ତାର ବିଦ୍ରୋହ ଓ ବିରୋଧ ଲେଞ୍ଜୁ ସହିତ ତାର ସଂପର୍କ ମଧ୍ୟରେ ହିଁ ପ୍ରକାଶ ପାଇଥାଏ । ବେଳେବେଳେ ସୋନାଦେଈର ଏପରି ମାନସିକ ଅବସ୍ଥା ଉପୁଜେ ଯେ, କୁମାରୀ ଅବସ୍ଥାରେ ତାକୁ ଯେଉଁ ଅଧିକାରୀ ଧର୍ଷଣ କରିଥିଲା ସେ ଆଉ କାହିଁକି ଆସେ ନାହିଁ ବୋଲି ସେ କ୍ଷୋଭକରି ବସେ । ଏଣେ ରାତି ଉଠେ ହଉଡ଼ି; ପିତୃବ୍ୟ ତାର ଚାଷକାମରେ ସାହାଯ୍ୟ କରୁନାହିଁ, ଡମ୍ବଙ୍କ ସହିତ ମଦ ଖାଉଛି, ଡମ୍ବୁଣୀଙ୍କ ସହିତ ପ୍ରୀତି କରୁଛି ଆଉ ଲୋକଙ୍କ ନିନ୍ଦା ଅର୍ଜୁଛି । ପିତୃବ୍ୟ ଓ ପୁତୁରାଙ୍କ ଝଗଡ଼ା ହାଟ ସବୁ ପ୍ରଘଟ ହୋଇଯିବାରୁ ସୋନାଦେଈ ଅପମାନିତ ବୋଧକରେ, ଲେଞ୍ଜୁକୁ ଆଉ ପ୍ରଶ୍ରୟ ଦିଏ ନାହିଁ । ସ୍ତ୍ରୀଲୋକଟିର ଚରିତ୍ର ଥାଉ କି ନ ଥାଉ ଆତ୍ମସମ୍ମାନ ଅଛି ।

ଗାଁରୁ ତଡ଼ା ଖାଇ ବାହାରିଯାଏ ଲେଞ୍ଜୁ । ସେ ଆଶ୍ରୟ ପାଏ ବାଳକାର ଗାଁରେ, ହାଗୁଣା ତାକୁ ଆଶ୍ରୟ ଦିଏ ।

ହଉତ୍ତୁ ସହିତ ଲେଞ୍ଜୁର ବିରୋଧ ଘଟେ ସୋନାଦେଈ କାରଣରୁ । ସାଓଁତା ପଦାଧିକାରୀ ହେବାମାତ୍ରେ ଅବଶ୍ୟ ହଉତ୍ତୁ ଉଦ୍ଧତ ହୋଇ ଉଠିଥିଲା । ଆଉ ପୁଅଟିକୁ ଜନ୍ମ ଦେଇ,ତା'ର ସ୍ତ୍ରୀ ଭାବିଥିଲା ସେ ଏପରି ଏକ ଆଶ୍ଚର୍ଯ୍ୟ କାର୍ଯ୍ୟ କରିଛି ଯେ, ଯାହା ଆଉ କେହି କେବେ କରିନାହିଁ । କିନ୍ତୁ ସନ୍ତାନ ଜନ୍ମ ପରଠାରୁ ସ୍ୱାମୀ ସ୍ତ୍ରୀଙ୍କ ଭିତରେ ବ୍ୟବଧାନ ଗଢ଼ି ଉଠିଥିଲା । ପୁଅର ମା ହୋଇ ପୃପ୍ଲୁ ଶୀର୍ଣ୍ଣ, ଦୁର୍ବଳ ଓ ସ୍ୱାସ୍ଥ୍ୟହୀନ ହୋଇଯାଇଛି । ଶିଶୁ ହାକନାକୁ ନେଇ ବ୍ୟସ୍ତ ଥାଏ ସେ, ହଉତ୍ତୁ ତାକୁ ପୂର୍ବପରି ଭଲ ପାଇପାରେ ନାହିଁ । ହଉତ୍ତୁର ମନେପଡ଼େ ପୃପ୍ଲୁ ସାଙ୍ଗରେ ତାର ପୂର୍ବରାଗର କଥା । ନାରୀ,—ସେ ହରିଣ ନୁହେଁ, କିନ୍ତୁ ହରିଣ ପରି ଚଞ୍ଚଳ, ସେ ପକ୍ଷୀ ନୁହଁ, ଅଥଚ ପକ୍ଷୀର ସ୍ୱର ପରି ସ୍ପଷ୍ଟ ଯାର କଣ୍ଠସ୍ୱର, ଆଉ ଶରୀରରେ ଯାହାର ଆକର୍ଷଣୀୟ ବର୍ତ୍ତୁଳତା । ବର୍ତ୍ତମାନ ସବୁ ଗତାନୁଗତିକ, ଧରାବନ୍ଧା । ହଉତ୍ତୁର ମନରେ ନୈରାଶ୍ୟ ଜନ୍ମେ । ପୁତ୍ରୁଲିର ସଖୀ ପୃପ୍ଲୁକୁ ଦେଖି ମନେକରେ, 'ପଳାଉଛି କାହିଁକି, ଏକାନ୍ତରେ ଦିଟା କଥା କହିପାରନ୍ତା । ଏପରି ଏକ ସମୟ ଆସି ଉପସ୍ଥିତ ହୁଏ ହଉତ୍ତୁ ଯେତେବେଳେ ଆଉ ପୃପ୍ଲୁକୁ ଚାହେଁ ନାହିଁ । ସେ ଜାଣେ ସୋନାଦେଈ ତାର ସ୍ୱାମୀକୁ ନେଇ ସନ୍ତୁଷ୍ଟ ନୁହେଁ । ସେ ଯେବେ ଉମ୍ବ ନହୋଇ କଳଘରର ସ୍ତ୍ରୀଲୋକ ହୋଇଥାନ୍ତା ତେବେ ହୋଇଥାନ୍ତା ହଉତ୍ତୁର ଉପଯୁକ୍ତ ଅର୍ଦ୍ଧାଙ୍ଗିନୀ । ପିତୃବ୍ୟ ଲେଞ୍ଜୁ ଯେପରି ଠିକ୍ ସେପରି ପୁତ୍ରୁଲି ହଉତ୍ତୁ ଆସି ସୋନାଦେଈ ଘରେ ପହଞ୍ଚେ । ସୋନାଦେଈ ସେମାନଙ୍କ ମନୋଭାବ ବୁଝିପାରି ଦୁହିଁଙ୍କର ତୁଳନା କରେ ମନେମନେ । ଲେଞ୍ଜୁ ବୁଢ଼ା ଅବଶ୍ୟ, କିନ୍ତୁ ତରଳ ଚିତ୍ତ ନୁହେଁ; ଅନ୍ୟ ପକ୍ଷରେ ହଉତ୍ତୁ ମଦଖୋର, ତାର ସବୁକିଛି ପ୍ରେମ ହି ହଜର । ଏଣୁ ସୋନାଦେଈକୁ ନେଇ ମୂଳତଃ ବିବାଦ ଘଟେ ଲେଞ୍ଜୁ ସହିତ ହଉତ୍ତୁର । ଯଦିଓ ସେ ଭାବ କରେ ଯେ

କକା ଗୃହ କାର୍ଯ୍ୟରେ ତାକୁ ସାହାଯ୍ୟ ନ କରିବାଟା ହିଁ ତା କୋଧର କାରଣ । ସ୍ତ୍ରୀପ୍ରତି ବିରୂପ ହୋଇ, ସ୍ତ୍ରୀ ଉପରେ ପ୍ରତିଶୋଧ ନେବା ଲାଗି ଉଦ୍ଦାମ ପାଶବିକତା ବଳରେ ବଉଡ଼ୁ ସୋନାଦେଈର ଦ୍ୱାରରେ ଉପସ୍ଥିତ ହୁଏ । ହଠାତ୍ ଚୈତନ୍ୟ ଉଦୟ ହୁଏ ଘରର ଜମି ଓ ପରର ସ୍ତ୍ରୀ ଉପରେ ଆଖି ପକାଇବା କନ୍ଧ ସମାଜରେ ପାପ । ଏହା ପରେ ସେ ଆକୃଷ୍ଟ ହୁଏ ପିଓଟି ପ୍ରତି ଧୀରେ ଧୀରେ, ସେ ତେଲୁଗୁ ଦେଶରେ ସତର ବର୍ଷ କଟାଇ ଆସିଛି । ବାପମା' ତାକୁ ନେଇ ଯାଇଥିଲେ ବିସ୍ମୃତ ଅଜ୍ଞାତରେ କୁଲି କାମ କରିବାକୁ ସୁଦୂରକୁ । ଜନ୍ମଭୂମିକୁ ଫେରି ଆସି ବଡ଼ ଉଦାସ ଲାଗେ ପିଓଟିକୁ—ପକ୍ଷୀଟିର ନିଜସ୍ୱ ବସା ଅଛି, ଅଥଚ ତାଙ୍କର ନାହିଁ । ନିଜ ଜାଗାକୁ ପ୍ରତ୍ୟାବର୍ତ୍ତନ କରି ଧୀରେ ଧୀରେ ମା–ଝିଅ ନିଜ ଅଞ୍ଚଳ ସୁତାରେ ଖିଅ ପାଇଛନ୍ତି । ସ୍ୱାସ୍ଥ୍ୟମୟ ଦେହର ଗଢ଼ଣ ଏଣୁ ପିଓଟିର । ଏକଦା ବଣରେ ଶିକାରରତ ବଉଡ଼ୁ ସହିତ ପିଓଟିର ଦେଖା ହୁଏ । ବନର ଅନୁକୂଳ ପରିବେଶରେ ଜାଗି ଉଠନ୍ତି ଚିରନ୍ତନ ନାରୀପୁରୁଷ । ଅସମାପ୍ତ ଜୀବନମୟ ଦେହ ମନରେ ନିଆଁ ଲାଗେ । ପିଓଟି ସହିତ ପୁପୁର ତୁଳନା କରେ ବଉଡ଼ୁ । ଜଣକର ସାହଚର୍ଯ୍ୟ ଗୃହସ୍ଥ ମନରେ ବ୍ରହ୍ମଚର୍ଯ୍ୟ ଜନ୍ମାଏ, ଅନ୍ୟ ଜଣକ ବଳ ସଞ୍ଚାର କରେ ଅସାଧ ସାଧନ କରିବାକୁ । ପୁପୁ ବୁଝିଛି ପୁରୁଷ ତା ଆୟତ୍ତ ବାହାରକୁ ଚାଲି ଯାଇଛି । ଯେଉଁ ସନ୍ଦେହରୁ ନଣନ୍ଦ ପୁଚୁଲି ଥିଲା ବନ୍ଧୁପରି ସେ ବଡ଼ ହୋଇ ବଦାପୁ ହେଉଛି । ସ୍ୱାମୀ ସହିତ ଝଗଡ଼ା କରି ପିତୃବ୍ୟ ଲେଞ୍ଜୁ ର ଘର ଗୁଡ଼ୁଛି—ଶୂନ୍ୟ ହୋଇ ଉଠିଛି ପୁପୁର ସଂସାର । ପୁଅଟି ଭିନ୍ନ ତାର ଅନ୍ୟ କୌଣସି ଅବଲମ୍ବନ ନାହିଁ । ବଉଡ଼ୁ ପାଖରେ ପୁପୁ ବର୍ତ୍ତମାନ ଖାଇବା ଶେଷର ଅଇଁଠାପତ୍ର—ଶୂନ୍ୟ ମଦଘଡ଼ା । ବଉଡ଼ୁ ମନେ କରେ ସନ୍ତାନ ହାକନା କେବଳ ବଂଶଧର—ମଆର ଅବଲମ୍ବନ, ପୁରୁଷର ବାର୍ଦ୍ଧକ୍ୟର ସ୍ମାରକ ଓ ପ୍ରତିଦ୍ୱନ୍ଦ୍ୱୀ ।

ବଉଡ଼ୁ ବୁଝିଛି ବିବାହ ବ୍ୟାପାରଟି ଏକ ଜାନ୍ତବ ସମ୍ପର୍କ ଏବଂ ଏହି ସମ୍ପର୍କ ଚିରସ୍ଥାୟୀ ନୁହେଁ । ଦୁଇଟି ଜନ୍ତୁ ଦୁଇ ଦିଗରୁ ଆସି ଅନ୍ଧକାରରେ

ମିଳିତ ହୁଅନ୍ତି, ନିର୍ଲଜତା କି ଅଶ୍ଳୀଳତା କଥା ଭୁଲି ମାଂସର ସ୍ୱାଦ ପାଆନ୍ତି । ପରେ ଆସକ୍ତି କଟିଯାଏ, ସ୍ୱରୂପ ଫୁଟି ଉଠେ; ଆରମ୍ଭ ହୁଏ ଦାନ୍ତ ଓ ନଖର ବିବାଦ । ମଝିରେ ମଝିରେ କରୁଣା ଯେ ନହୁଏ ନୁହେଁ, ହୁଏ । କିନ୍ତୁ ଅଧିକାଂଶ ସମୟ ଦଉଡ଼ି ପୁପୁ ସହିତ କୁତ୍ସିତ ବ୍ୟବହାର କରେ । ଡମ୍ଭ ଘରକୁ ସାଉଁତାର ସ୍ତ୍ରୀ ପକ୍ଷରେ କିଛି ମାଗିବାକୁ ଯିବାର ପ୍ରଶ୍ନ ଉଠେ ନାହିଁ । କିନ୍ତୁ ଘରେ ମଦ ନ ଥିଲେ ସେଠାରୁ ମଦ ନେଇ ଆସିବାର ଅପମାନକର କାର୍ଯ୍ୟ କରିବାକୁ ପୁପୁକୁ ବାଧ କରେ ଦଉଡ଼ି । ପୁପୁର ଏହି ଅପମାନ ସୋନଦେଈ ଉପଭୋଗ କରିଥାଏ । ଦଉଡ଼ି ଓ ପୁପୁର ଦାଂପତ୍ୟ ଜୀବନ ପୋଡ଼ା ଡରକାଷ୍ଠ ପରି ଅଙ୍ଗାର ହୋଇ ଯାଇଛି । ଅନ୍ୟ ଦିଗରେ ପିଓଟି ଭାବୁଛି ଦଉଡ଼ି ପରି ଲୋକର ଘରଣୀ ହେବା କାମ୍ୟବସ୍ତୁ । ସାଉଁତା ଯେ, ଉଚ୍ଚବଂଶରେ ତାର ଜନ୍ମ । କି ନିର୍ଲଜ୍ଜ ! କି ବଳିଷ୍ଠ ! କିନ୍ତୁ ନିଜର ଶକ୍ତି ଓ ସାହସ ଯୌନ ସେ ପ୍ରକାଶ୍ୟରେ ଦର୍ପ କରେ ନାହିଁ । ପିଓଟି ସୁଖସ୍ୱପ୍ନରେ ମଗ୍ନ ରହେ । ଦାଂପତ୍ୟ ଜୀବନ ବିନଷ୍ଟ ହେବାକୁ ଯାଉଛି । ଏଣେ ସାଉଁତାର ଦାୟିତ୍ୱ ବି ଦଉଡ଼ି ଯଥାଯଥ ଭାବରେ ପାଳନ କରିପାରୁ ନାହିଁ । ବଙ୍ଗଦେଶରେ ମନ୍ୱନ୍ତର, ମାନ୍ଦ୍ରାଜରେ ଦୁର୍ଭିକ୍ଷ; ସମୟ ଦେଖି ହେମିଲ୍ ଜଗନ୍ନାଥ ତା' ଗୁମାସ୍ତାକୁ ପଠାଇଛି । ସେ ନିର୍ଦ୍ଦେଶମତେ ଦଉଡ଼ିକୁ ଚୁରୁଟ୍ ଓ ପାଟଲି କଦଳି ଦେଇଛି, ବିକ୍ସୁଭୁଷାରେ ମୋହିତ କରିଛି । ସୁନ୍ଦର ଫସଲ ଫଳିଛି । ଧାଡ଼ିଧାଡ଼ି ଛୋଟ ଛୁଆଙ୍କ ପରି ଠିଆ ହୋଇଛନ୍ତି ଗଛ । ଗୁମାସ୍ତା ଭୟ ଦେଖାଏ, ଏଥର ଫସଲ ନଈ ଭସାଇ ନେବ, ହରିଣ ଖାଇଯିବେ, ପୋକ ନଷ୍ଟ କରିବେ । ସୁତରାଂ ଏବେଠୁ ଦାମ୍ ଠିକ କରି ଅଗ୍ରୀମ ନେଇ ନିଅନ୍ତୁ ସେମାନେ । ଗତଥର ଯେଉଁ ପରିମାଣ ଫସଲର ଦାମଥିଲା ଦୁଇଟଙ୍କା, ଦଉଡ଼ିର ଅନୁମୋଦନକ୍ରମେ ସେହି ପରିମାଣ ଫସଲର ଦାମ୍ ନିର୍ଦ୍ଧାରିତ ହେଲା ଦେଢ଼ ଟଙ୍କା । ସାମାନ୍ୟ ଦଶପଞ୍ଚ ଟଙ୍କା ଅଗ୍ରୀମ ଦେଇ ଚାଲିଗଲା ଗୁମାସ୍ତାଟି । ଏକ ପକ୍ଷରେ ପିଓଟିର ଆକର୍ଷଣ, ଅନ୍ୟ ଦିଗରେ ସୋନାଦେଈର ଯୌନମାଦକତା; ଦଉଡ଼ି ଅସ୍ଥିର ହୋଇ ଉଠିଛି । ଶେଷ ପର୍ଯ୍ୟନ୍ତ ବଳକାର ଗାଁରୁ ଅଗ୍ନିଶିଖା ପରି

ଯୁବତୀଟିକୁ ନେଇ ସେ ଗାଁ ଉଦ୍ଦେଶ୍ୟରେ ଯାତ୍ରା କରନ୍ତି, ମନେ ମନେ ଠିକ୍ କରନ୍ତି ପିଉଟିକୁ ରଖିବ ସୁଖରେ, ପୁୟୁ ରହିବ ଯଥାଶାନ୍ତ । କିନ୍ତୁ ପିଉଟି ରକ୍ଷିତା ଭଳି ରହିବାକୁ ଚାହିଁବ କାହିଁକି ? ଦଉଡ଼ୁର ପ୍ରତ୍ୟାବର୍ତ୍ତନ ପାଇଁ ଦେହ ମନରେ ପରିଚ୍ଛନ୍ନ ହୋଇ ଅପେକ୍ଷା କରନ୍ତି ପୁୟୁ । କିନ୍ତୁ ଦଉଡ଼ୁ ଯେତେବେଳେ ଫେରି ଆସନ୍ତି ଦ୍ୱିତୀୟ ସ୍ତ୍ରୀ ନେଇ ସେତେବେଳେ ସେ ସ୍ତବ୍ଧ ହୋଇଯାଇଛନ୍ତି । ଅନ୍ଧାର ରାତିରେ ପୁୟୁ ଯେତେବେଳେ ଗାଁରୁ ପଳାଇ ଯାଉଛି ସେତେବେଳେ ଦଶାର ତାକୁ ନିରସ୍ତ କରିଛି, ନିଜର ଘରକୁ ଆଣିଛି । ସାନ୍ତ୍ୱନା ଦେଇ କହିଛି, ନିଜେ ନ ଚାହିଁଲେ କିଏ ଆମକୁ ଦୁଃଖ ଦେଇପାରେ ? ହେଉ ହେଲେ ପୁୟୁ ଭାବେ, କ୍ଷୁଦ୍ର ପକ୍ଷୀଟିର ବସା ଅଛି, ପିଂପୁଡ଼ିର ଆହାର ଅଛି । ଧରିତ୍ରୀ କୋଳରେ ସମସ୍ତଙ୍କର ସ୍ଥାନ ଅଛି, ତେଣୁ ଭାବନା କ'ଣ ପାଇଁ ? ମନେମନେ ଘୋଷି ହୁଏ, 'ଜୀବନରେ ସ୍ୱାଦ ଅଛି, ମରଣ ନାହିଁ, ଦୁଃଖ ନାହିଁ ।'' କିନ୍ତୁ ଭ୍ରାନ୍ତି ଫାଟିଯାଏ, ଆଖି ଅଶ୍ରୁରେ ଭରିଯାଏ । ଭଗ୍ନ ସଂସାର ଓ ବିଚୂର୍ଣ୍ଣ ଦାମ୍ପତ୍ୟର ଧ୍ୱଂସସ୍ତୂପ ଉପରେ ଠିଆ ହୁଏ ପୁୟୁ । ପରିବାରର, ଦାମ୍ପତ୍ୟ ଜୀବନର ଅବକ୍ଷୟ ଭିତରେ ବାରମ୍ବାର ତାର ମନେ ପଡ଼ୁଛି ଶ୍ୱଶୁର ସରବୁ ସାଓଁତାର କଥା । ଶାଳଗଛ ପରି ବିଶାଳ ମଣିଷଟି ଥିଲା ପ୍ରାଚୀନ କନ୍ଧ ସମାଜ ଓ କନ୍ଧ ସଂସ୍କାରର ପ୍ରତୀକ ଭଳି । ସେ ନାହିଁ; ତାର ସହିତ ପୁରୁଣା ମୂଲ୍ୟବୋଧର ଅନ୍ତର୍ଦ୍ଧାନ ଘଟିଛି । 'ସ୍ଥିତି ନାହିଁ, ବିଚ୍ୟୁତି । କାଳର ଗରଳ, ଯୁଗାନ୍ତର 'ମନ୍ୱନ୍ତର ।' ପୁୟୁର ପାରିବାରିକ ଜୀବନର ବିପର୍ଯ୍ୟୟ ହୋଇ ଉଠେ ସମଗ୍ର କନ୍ଧସମାଜର ବିପର୍ଯ୍ୟୟ-ସଙ୍କଟର ଉପମାନ; କ୍ଷୁଦ୍ର ସହିତ ଯେପରି ବଡ଼ର ତୁଳନା ଦିଆଯାଏ ।

ଆଜି ଗୋଟିଏ ପରିବାରର ବିପର୍ଯ୍ୟୟ ମଧ୍ୟରେ ଆହୁରି ଅନେକ ଭୟଙ୍କର ପ୍ରତ୍ୟକ୍ଷ ଭାବରେ ଅନ୍ୟ ଏକ ଉପଜାତି ଗୋଷ୍ଠୀର ସଙ୍କଟକୁ ରୂପାୟିତ କରିଛନ୍ତି ଗୋପୀନାଥ ମହାନ୍ତି, ଏହି ଉପଜାତିର ନାମାଙ୍କିତ 'ପରଜା' ଉପନ୍ୟାସରେ । କୋରାପୁଟ ଓ ରାୟଗଡ଼ା ସହରକୁ ଯେଉଁ ପଥ ସଂଯୁକ୍ତ କରିଛି ସେହି ବାଟରେ ପାହାଡ଼ ଉପରକୁ ଗୋଟିଏ କ୍ଷୁଦ୍ର ଗ୍ରାମ ।

ତେଇଶିଟି ପରିବାର ଦୁଇଟି ସାହିରେ ବିଭକ୍ତ ହୋଇ ଏଠାରେ ବାସ କରନ୍ତି । ଗୋଟିଏ ସାହିରେ ପରଜା ଉପଜାତି, ଅନ୍ୟଟିରେ ଡମ୍ବମାନେ । ସୁକ୍ରୁ ଜାନିର ସ୍ତ୍ରୀ ସମ୍ବାରୀକୁ ବାଘ ଖାଇଛି । ସେ ମାଣ୍ଡିଆ ଓ ଟିକ୍ରା ଦୁଇପୁଅ ତଥା ଜିଲି ଓ ବିଲି ଝିଅଙ୍କ ସହିତ ଥାଏ । ଏହି ଦରିଦ୍ର ପରିଶ୍ରମୀ ଓ ଅଳ୍ପରେ ସନ୍ତୁଷ୍ଟ ପରିବାରଟିକୁ ନିୟତି ଯେପରି ଦୈବ ଆକ୍ରୋଶର ରୂପ ପରିଗ୍ରହ କରି ଆକ୍ରମଣ କରେ । ଯାହାକୁ ଦୈବ ଆକ୍ରୋଶ ବୋଲି କୁହାଯାଉଛି ତାହା ପ୍ରକୃତରେ ସାମାଜିକ ଓ ଅର୍ଥନୈତିକ ନିଷ୍ପେଷଣ । ଯେଉଁ ଉତ୍ପୀଡ଼କ ସମାଜ ବିନ୍ୟାସଟିକୁ ଗୋପୀନାଥ ମହାନ୍ତି ଅସାମାନ୍ୟ କୁଶଳତାର ସହିତ ଉଦ୍‌ଘାଟିତ କରିଛନ୍ତି ।

ଦୁଇ ଭଉଣୀ ଜିଲି ଓ ବିଲି ନିରେଳାରେ ଗାଧୋଉଥିଲେ ନାଳର ବାଙ୍କରେ । ବୟସ ସତର ଓ ଚଉଦ । ପରଜାର ଗାଧୋଇବା ଅଭ୍ୟାସ ଅନୁଯାୟୀ ଢଢେଁପାକ ଲଙ୍ଗଳା । ପରଜା ପୁରୁଷମାନେ ଶିଷ୍ଟାଚାରର ଜାଣନ୍ତି, ତେଣିକି ଅନାନ୍ତି ନାହିଁ । କିନ୍ତୁ ସଭ୍ୟଦେଶାଗତ ହାଫ୍ ପ୍ୟାଣ୍ଟ ସାର୍ଟ ପିନ୍ଧିଥିବା ଜଙ୍ଗଲ ଜମାନ୍ ଶିକାର ବାହାନାରେ କାମାର୍ତ୍ତ ଦୃଷ୍ଟିରେ ଏ ଦୁହିଁଙ୍କୁ ଲକ୍ଷ୍ୟ କରିଥିଲେ । ଦୁଇ ଭଉଣୀ ବିବ୍ରତ ହୋଇ ଖସିଗଲେ ସତ, କିନ୍ତୁ ସେହି ଜମାନ୍‌ର କୁଦୃଷ୍ଟିରେ ପଡ଼ିଗଲା ଜିଲି । ଜଙ୍ଗଲରେ କେହି ଗଛ କାଟିଲେ ତାକୁ ଧରିବା ଜମାନ୍‌ର କାମ । ଜମାନ୍ ବନ ପ୍ରହରୀ । ଗଛ କାଟିବାକୁ ହେଲେ, ମହୁ ସଂଗ୍ରହ କରିବାକୁ ହେଲେ ତାର ଅନୁମତି ନେବାକୁ ହୁଏ । ସରକାରୀ ପଦମର୍ଯ୍ୟାଦାର ପରିସରରେ ସବୁଠୁ ତଳେ ତାର ସ୍ଥାନ ଅବଶ୍ୟ, କିନ୍ତୁ ଉପଜାତିର ସରଳ ମଣିଷଗୁଡ଼ିକଙ୍କ ମନରେ ତା ପାଇଁ ଥାଏ ଅନନ୍ତ ଭୟ ମିଶା ସମ୍ଭ୍ରମ । ଗ୍ରାମ ପ୍ରଧାନ ପ୍ରାୟ ନମସ୍କାର କରି କରି ତା ଆଡ଼କୁ ଆସିଥାଏ ଓ ପାଦଛୁଇଁ ପ୍ରଣାମ କରେ । ଏହି ପରାକ୍ରାନ୍ତ ବନପ୍ରହରୀଟିକୁ ଦୁଇଟି କୁକୁଡ଼ା, ତିନୋଟି ପଣସ ଓ ଦୁଇଟଙ୍କା ନଜରାନା ଦେଇ ସୁକ୍ରୁ ଜଙ୍ଗଲ ପରିଷ୍କାର କରି ଚାଷଜମି ବଢ଼ାଇବାର ଅନୁମତି ପାଇଥିଲା । ପ୍ରଭୁଙ୍କ ଅନୁମତି ପାଇ ଦୁଇ ପୁଅକୁ ଧରି ସୁକ୍ରୁ ଘର୍ମାକ୍ତ ପରିଶ୍ରମ କରି

ଜଙ୍ଗଲ ପରିଷ୍କାର କରିଛନ୍ତି । କି ମାଟି ! କେତେ ଯୁଗର ସଢ଼ା ପତ୍ରର ଗଦାହୋଇ ରହିଛନ୍ତି କଳା ଖତ ହୋଇ । ସୁକରୁ ମୁଗ୍‌ଧ ଦୃଷ୍ଟିରେ ଦେଖେ । ଏବେ ଫେରିଆସେ ଜଙ୍ଗଲ ଜମାନ୍, ଆଉ ଗର୍ଜନରେ ଜିଲର ସମ୍ମତି ପ୍ରାର୍ଥନା କରି ବ୍ୟର୍ଥହୁଏ । ନିଜର ପ୍ରେମିକ ବାଘଲୀ ସହିତ ତୁଳନାରେ ଏହି ବନପ୍ରହରୀଟିକୁ ଜିଲର ମନେହୁଏ ଯେପରି ଏକ କାଉହୁଙ୍କୁଡ଼ା—ସ୍କୋୟାର ନୋ—'ଢେଙ୍ଗା ଲୋକଟାଏ, ଖାଲି ଖାଲି ଗାଲି, ମାଳି ଜରରେ ସଢ଼ି ସଢ଼ି ସରୁ ସରୁ ଲମ୍ବ ଲମ୍ବ ହାତ ଗୋଡ଼ ।' ପ୍ରତ୍ୟାଖ୍ୟାତ ଜମାନ୍ ଜିଲକୁ ଶଯ୍ୟାସଙ୍ଗିନୀ କରିବାର ଦାବି ଜଣାଇ ସୁକରୁ ପାଖକୁ ଦୂତ ପଠାଏ । ଉପଜାତିର ମଣିଷ ରାଗିଲେ ଅରଣ୍ୟ-ଶ୍ୱାପଦ ପରି ଜଳି ଉଠନ୍ତି । ପରଜା ଝିଅ ବର୍ଷି ପାଇଁ ଜନ୍ମିନାହିଁ । ସୁକରୁ ଦୂତକୁ ପ୍ରହାର କରି ଫେରାଇ ଦିଏ । ବନପ୍ରହରୀ ଜମାନ୍ ଏଥରକ ଅପମାନକୁ ହଜମ କରି ଫେରିଯାଏ ସତ, କିନ୍ତୁ ଏ ପ୍ରତ୍ୟାସନ୍ନ ବିପଦର ଆଶଙ୍କା ସୁକରୁର ଅସ୍ତିତ୍ୱକୁ ଆଚ୍ଛନ୍ନ କରି ରଖେ । ମନେହୁଏ ଯେପରି ତା ଆଖିରେ ସବୁ ଅସ୍ପଷ୍ଟ ଦିଶୁଛି, କେହି ଯେପରି ତାର କଣ୍ଠରୋଧ କରୁଛି । ସେ ରାଗ ରୋକିପାରି ନାହିଁ । କିନ୍ତୁ ପରିଣାମ ! ପ୍ରକୃତରେ ଦିନେ ଜଙ୍ଗଲ ଜମାନ୍ ଫେରେ, ଠିକ୍ ନେଳି ଆକାଶରୁ ବଜ୍ର ଓହ୍ଲେଇଲା ପରି । ପ୍ରଶ୍ନ କରେ, କିଏ କାଟିଲା ଏ ଗଛ ? ତାଙ୍କର ଅନୁମତି ନେଇ ସୁକରୁ ଗଛ କାଟିଛି ବୋଲି ଯେତେ କହିଲେ ବି ବେମାଲୁମ ଅସ୍ୱୀକାର ବନରକ୍ଷୀ । ଜମି ମପାଯାଏ, କଟାଗଛର ଗଣ୍ଡି ଗଣାଯାଏ । କ୍ଷତିର ପରିମାଣ ହିସାବ କରି ଜୋରିମାନା ଧାର୍ଯ୍ୟହୁଏ । ସୁକରୁର ପ୍ରତିବାଦ ଜମାନ୍ ଶୁଣେ ନାହିଁ । ଜୋରିମାନା ନ ଦେଲେ ସମ୍ଭାବ୍ୟ କି ଶାସ୍ତି ମିଳିବ ସେଇଟାକୁ ବରଂ ଜଣାଇଦିଏ ସେ ଅତିରଞ୍ଜିତ କରି । ଜିଲି ବ୍ୟାପାର ପରେ ସୁକରୁର ଆତ୍ମମର୍ଯ୍ୟାଦାମୟ ପ୍ରତ୍ୟାଖ୍ୟାନର ଏହାହିଁ ହୁଏ ସୁପରିକଳ୍ପିତ ପରିଣାମ । ଯେତେବେଳେ ସବୁ ଉଦ୍ୟମ ବ୍ୟର୍ଥହୁଏ, ଅଧିକାରୀର ଅଭିଶାପରୁ ତାକୁ ରକ୍ଷା କରିବାକୁ ଚୁପ୍ ଚୁପ୍ ଅନ୍ଧାରରେ ପେଟ୍ଟକି ବାଦୁଡ଼ି ପରି ଦ୍ୱିଧାଗ୍ରସ୍ତ ସନ୍ତର୍ପଣରେ ଛଟନଗୁରଜଣ ପ୍ରତିବେଶୀ ଆସି ସାନ୍ତ୍ୱନା ଦିଅନ୍ତି, ସାରା ପରିବାରଟି ଅନ୍ଧାରରେ କାନ୍ଦୁଥିଲାବେଳେ ନିଜର ବଡ଼ିମା ଦେଖାଇ ତାକୁ ପ୍ରବଚନ ଶୁଣାନ୍ତି,

"ଆରେ ବାବା, ଜମାନ୍ ଶୁଆର, ଦେଶୀଆ ଘୋଡ଼ା / ଯେଣିକି ଚାହିଁଲେ ତେଣିକି ଅଡ଼ା।" ଅଶ୍ୱାରୋହୀର ଇଚ୍ଛାମତ ଘୋଡ଼ା ଚାଲିବାକୁ ବାଧ୍ୟ। ଆହୁରି ସେମାନେ ଜଣାନ୍ତି ଯେ, ଅନେକ ଅନୁରୋଧରେ ଜୋରିମାନା ଷାଠିଏ ଟଙ୍କାକୁ କମିଛି। ହୁଏତ ଚେଷ୍ଟା କଲେ ପଚିଶ ଟଙ୍କାକୁ କମାଯାଇ ପାରିବ। ପରାମର୍ଶ ଦିଅନ୍ତି ପାଖ ଗାଁର ସାହୁକାର ରାମଚନ୍ଦ୍ର ବଣେଇଠାରୁ କରଜ ନେବାକୁ। ଆପତ୍ତି କରେ ସୁକରୁ, କାରଣ ସେ ଜାଣେ ଏ କରଜର ଚିର ଦାସତ୍ୱ ଭିନ୍ନ ଅନ୍ୟ କିଛି ନୁହେଁ। ଏକ ବର୍ଷ ଗୋତି ଖଟିଲେ ମୂଳରୁ ପାଞ୍ଚଟଙ୍କା ଛାଡ଼ ମିଳିବ ଅବଶ୍ୟ, କିନ୍ତୁ ସୁଧ ଯେହେତୁ ଚକ୍ରବୃଦ୍ଧି ହାରରେ ବଢ଼ିବ ସେହି କାରଣରୁ ପୁତ୍ରପୌତ୍ରାଦିକ୍ରମେ ଅନନ୍ତକାଳ ଗୋତି ବା ଶ୍ରମଦାସ ହୋଇ ରହିବାକୁ ପଡ଼ିବ। ଏଣେ ଜୋରିମାନା ନ ଦେଲେ ଜେଲ ଖଟିବାକୁ ହେବ; ଜେଲ ଯିବାର ଅର୍ଥ ଜାତିଚ୍ୟୁତ ହେବା। ଜେଲରୁ ମୁକୁଳିଲା ପରେ ଜାତିରେ ଗୃହୀତ ହେବାକୁ ହେଲେ ଅର୍ଥବ୍ୟୟ କରିବାକୁ ପଡ଼ିବ। ତାହାର ପରିଣତି ବି ଋଣ, ଆଉ ଋଣର ପରିଣାମ ଗୋତି ଖଟିବା। ଜୀବନ ନିରର୍ଥକ ମନେ ହୋଇଛି। ଭବିଷ୍ୟତର ସ୍ୱପ୍ନ ଲୁପ୍ତ ହୋଇ ଯାଇଛି। ଯେତେବେଳେ ଜୀବନରେ ସଙ୍କଟ ଆସେ ସେତେବେଳେ ସୁକରୁ ମୃତ ସ୍ତ୍ରୀ ସମ୍ବାଙ୍କୁ ମନେ ପକାଏ। ସମ୍ବାଶି ଯେବେ ପରାମର୍ଶ ଦେଇପାରନ୍ତା, ଯଦି ତା'ର ଦୁର୍ଭାବନାର ଅଂଶୀଦାର ହୁଅନ୍ତା ! ଶେଷକୁ ସ୍ଥିର ହୁଏ ସେ ଓ ସାନପୁଅ ଚିନ୍ତା ଋଣ ପରିଶୋଧ ପାଇଁ ଗୋତିଯିବେ। ବଡ଼ ପୁଅ ମାଣ୍ଡିଆ ନିଜର ଘର ଓ ଜମିଜମା କଥା ବୁଝିବ, ଚାଷବାସ ଦେଖିବ। ଦରିଦ୍ର କୁଟୀରର କଷ୍ଟ ସଞ୍ଚିତ ଟଙ୍କା ପଇସା ଯେପରି ଚୁମ୍ବକର ଆକର୍ଷଣ ପରବଶ ହୋଇ ରାମଚନ୍ଦ୍ର ବଣେଇର ଟଙ୍କା ବାକ୍ସରେ ଶେଷପର୍ଯ୍ୟନ୍ତ ଯାଇ ଚିର ଆଶ୍ରୟ ପାଆନ୍ତି। ମୂଳଠାରୁ ସୁଧ ବେଶି, କରଜ ତେଣୁ ଦିନୁଦିନ ବଢ଼ି ଚାଲେ। ସରଳ ଉପଜାତିର ମଣିଷ ପ୍ରଶ୍ନ କରେ ନାହିଁ, ଠକେ ନାହିଁ, ସୁଧଖୋର ସାହୁକାରର ହିସାବକୁ ବିନା ପ୍ରତିବାଦରେ ମାନି ନିଏ। ସେଥିପାଇଁ ସାହୁକାରର ବ୍ୟବସାୟ ବିନା ବାଧାରେ ଚାଲେ। ନୂଆ ନୂଆ ଗରିବ ସାହୁକାରର ବଡ଼ଶୀରେ ଧରାପଡ଼ନ୍ତି। ନୂଆ ନୂଆ ଗୋତି ଜନ୍ମନ୍ତି। ଚକ୍ରବୃଦ୍ଧି ହାରର ସୁଧ, ବାଜେୟାପ୍ତ ହେଉଥିବା ଜମିର

ଉତ୍ପାଦନ ଓ କଣାଗୋଲମ ଗୋଣ୍ଡର ହାଡ଼ଭଙ୍ଗା ପରିଶ୍ରମରେ ସାହୁକାରର ଭଣ୍ଡାର ପୂରୁଥାଏ । ତା ଘରର ଗୋବର ଫସଲର ଗନ୍ଧ ପ୍ରକୃତରେ ଟଙ୍କାର ସୌରଭ । ମାଙ୍କଡ଼ସା ଜାଲର ତନ୍ତୁପରି ପ୍ରତ୍ୟେକ ପାହାଡ଼ରୁ ତଳକୁ ଲମ୍ବି ଆସିଥିବା ଲାଲ ପାଦଚଲା ରାସ୍ତାଗୁଡ଼ିକ ସାହୁକାର ଘର ଦ୍ୱାର ମୁହଁରେ ଯାଇ ଶେଷ ହୋଇଥାନ୍ତି । ସାହୁକାର ସବୁ ଗ୍ରାସ କରିଥାଏ । ରାମଚନ୍ଦ୍ର ସାହୁକାର ସହିତ ବଡ଼ ଭାବ ରେଭେନ୍ୟୁ ଅଫିସର ବା ରବିନ ଗରଜସୁନ୍ଦରଙ୍କର । ଏ ଦୁଇଜଣ ପାହାଡ଼ୀ ଅଞ୍ଚଳର ଜୀବନ୍ତ ଆତଙ୍କ । ଦୁଇଜଣ ପରାମର୍ଶ କରନ୍ତି କିପରି ସାହୁକାର ଆଦିବାସୀର ଜମି ଆତ୍ମସାତ କରିବ ସହଜରେ । ସାହୁକାର ରବିନଙ୍କ ପରାମର୍ଶରେ ଦରଖାସ୍ତ କରେ ଖଜଣା ବଢ଼ାଇବାକୁ, କାରଣ ସରକାରଙ୍କ ଖାତା-ପତ୍ରରେ ଯେତିକ ଜମି ତା ନାମରେ ଲେଖାଅଛି, ପ୍ରକୃତରେ ତା ଜମିର ପରିମାଣ ତାଠାରୁ ଅନେକ ବେଶି । ରବିନ ଗରଜସୁନ୍ଦର ଆଦିବାସୀଙ୍କ ଜମିକୁ ସରକାରୀ ଦଲିଲପତ୍ରରେ ସାହୁକାରର ନାମରେ ଲେଖାଇ ଦିଏ । ପରବର୍ତ୍ତୀ ପର୍ଯ୍ୟାୟରେ ସାହୁକାର ଗୋଣ୍ଡଙ୍କୁ ପଠାଏ ଏସବୁ ଜମି ଚାଷ କରିବାକୁ । ପଞ୍ଚାୟତ କିଛି କରିପାରେ ନାହିଁ । କାରଣ ସରକାରୀ ଖାତାପତ୍ର ଅନୁଯାୟୀ ସେ ସବୁ ଜମି ପ୍ରଥମରୁ ସାହୁକାରର ଥିଲା, ସେ ଏବେ ପୁନରୁଦ୍ଧାର କରିଛି ମାତ୍ର । ଜମି ମାଲିକର ହାତଛଡ଼ା ହୋଇ ସାହୁକାରର ଗର୍ଭଗତ ହୁଏ । ଯାହାର ଜମି ଏପରି ଅନ୍ୟାୟ ଭାବରେ ଦଖଲ କରାଯାଏ, ତାଙ୍କୁ ବି ମିଥ୍ୟାସାକ୍ଷୀ ବଳରେ ଚୋରି ଅପରାଧରେ ଜେଲକୁ ପଠାଇ ପାରେ ସାହୁକାର । ଚରାଇଲାବେଳେ ଯେତେ ଗୋରୁ କି ମେଣ୍ଢାକୁ ବାଘଖାଏ, ତେବେ ସାହୁକାର ଗୋଣ୍ଡଠାରୁ କ୍ଷତିପୂରଣ ଆଦାୟ କରେ, ତାକୁ ଆହୁରି ବେଶି ବର୍ଷ ଗୋତି ଖଟିବାକୁ ପଡ଼େ । ଅନ୍ୟ ପକ୍ଷରେ ଗୋଣ୍ଡକୁ ଯେବେ ବାଘ ଖାଏ, ସାହୁକାର ଏତିକି ଦୁଃଖରେ ମ୍ରିୟମାଣ ହୁଏ ଯେ, ଯେଉଁ ଟଙ୍କା ସେ ଧାର ଦେଇଥିଲା, ଯାହାକୁ ସେ ଗୋତିର ରକ୍ତ ଓ ଝାଳରୁ ଆଦାୟ କରିଥାନ୍ତା ତାହା ଅକାରଣରେ ପାଣିରେ ପଡ଼ିଲା ! ଆଉ ଏକ ଗୁଣ, ଯୁବତୀ ଦେଖିଲେ ତାର ଲାଳ ବୁହେ । ବିନାମୂଲ୍ୟରେ ନାରୀସମ୍ଭୋଗର କୌଣସି ସୁଯୋଗ ସେ କେବେ ହରାଏ ନାହିଁ । ଏପରି ଏକ ପ୍ରତିନିଧି ସ୍ଥାନୀୟ ସାହୁକାର ସହିତ

ସୁକରୁର ଦଲାଲ ପ୍ରସ୍ତୁତ ହୋଇଯାଏ । ପଚିଶ ଟଙ୍କା ଋଣ ପାଏ ସୁକରୁ ପଚିଶ ଟଙ୍କା ଚକ୍ରବୃଦ୍ଧି ହାରର ସୁଧରେ । ସୁକରୁ ଓ ଚିନ୍ତା ଗୋତି ହୋଇଯାଆନ୍ତି ରାମଚନ୍ଦ୍ର ବଣେଇର । ସୁକରୁ ଜମାନ୍‌କୁ ସିଧାପାଇ ଜୋରିମାନା ଟଙ୍କା ଦେବାକୁ ଚାହାଁନ୍ତେ ବାଧା ଦିଅନ୍ତି ଗ୍ରାମ ପ୍ରଧାନ ଓ ଧୂର୍ତ୍ତ ପ୍ରତିବେଶୀଗଣ । ଏମାନେ ସୁକରୁ ପକ୍ଷରୁ ଜୋରିମାନା ଜମା ଦେବେ । ପ୍ରକୃତ ପକ୍ଷରେ ବନରକ୍ଷୀକୁ ପନ୍ଦର ଟଙ୍କା ଦେଇ ବାକିତକ ସେମାନେ ନିଜ ମଧ୍ୟରେ ବାଣ୍ଟି ନିଅନ୍ତି । ଆଧୁନିକ ସଭ୍ୟତାର ଅନୁ-ପ୍ରବେଶରେ ଜନଜାତିଙ୍କ ମୂଲ୍ୟବୋଧର କିପରି ଅବକ୍ଷୟ ଘଟିଛି ତାର ପ୍ରମାଣ ମିଳିଯାଏ ଗ୍ରାମ ପ୍ରଧାନ ଓ ତା ସଙ୍ଗମାନଙ୍କ ଆଚରଣରୁ । କାଉ ବର୍ତ୍ତମାନ କାଉର ମାଂସ ଖାଏ ।

ସୁକରୁ ପରିବାର ଉପରେ ଦ୍ୱିତୀୟ ବଜ୍ରପାତ ହୁଏ ସେତେବେଳେ ଯେତେବେଳେ ମାଣ୍ଡିଆ ବେଆଇନ ମହୁଲ ମଦ ତିଆରି କରିବାକୁ ଯାଇ ଅବକାରୀ କର୍ମଚାରୀଙ୍କ ହାତରେ ଧରାପଡ଼େ । ମଦ ତିଆରି କରିବା ସୁନାଝିଟିପରି ଲାଭଜନକ । ସେ ଭାବିଥିଲା, ଶୀଘ୍ର ସେ ଷାଠିଏ ଟଙ୍କା ସଂଗ୍ରହ କରି ପାରିବ, ଏବଂ ଉପଜାତିର ରୀତି ଅନୁଯାୟୀ କନ୍ୟାପଣ ଦେଇ ପ୍ରଣୟିନୀ କାଜୋଡ଼କୁ ସ୍ତ୍ରୀ ହିସାବରେ ଘରକୁ ଆଣି ପାରିବ । କିନ୍ତୁ ସବୁ ସ୍ୱପ୍ନ ଭାବ ଗୋଳମାଳ ହୋଇଯାଏ, ଯେତେବେଳେ ତାର ଅବୈଧ କାର୍ଯ୍ୟ ଧରାପଡ଼େ । ବିଚାରରେ ପଚିଶ ଟଙ୍କା ଜୋରିମାନା ହୁଏ, ଅନାଦାୟରେ ପନ୍ଦର ଦିନର କାରାବାସ ବ୍ୟବସ୍ଥା ରହେ । ବଜ୍ରାହତ ଶାଳଗଛ ପରି ଅନ୍ତଃସାରଶୂନ୍ୟ ହୋଇପଡ଼େ ମାଣ୍ଡିଆ—ଜୀବନ୍ମୃତ । କାଜୋଡ଼କୁ ଘରକୁ ଆଣିବାର ସ୍ୱପ୍ନ ବିଲୀନ ହୋଇଯାଏ । ଜେଲଯିବା ସମୀଚୀନ ନୁହେଁ, ସମାଜରେ ତାହାହେଲେ ପତିତ ହୋଇଯିବ ସେ । ତେଣୁ ଜାମିନରେ ମୁକ୍ତିପାଇ ଜୋରିମାନା ଟଙ୍କା ଯୋଗାଡ଼ କରେ ସେ ସେହି ରାମଚନ୍ଦ୍ର ବଣେଇଠାରୁ ଧାରକରି । ବାପ ଓ ସାନଭାଇ ଚିନ୍ତା ପରି ମାଣ୍ଡିଆ ବି ଗୋତି । ଗୋଲାମ ହୋଇଯାଏ । ଏଣେ ପ୍ରେମିକ ମାଣ୍ଡିଆର ଅନୁପସ୍ଥିତିରେ କାଜୋଡ଼ ଧୀରେ ଧୀରେ ଜେଲର ପ୍ରେମିକ ବାଗ୍ଲା ପ୍ରତି ଅନୁରକ୍ତ ହୋଇପଡ଼େ । ବାଗଲୁ ଜାନି

ମୂଲ, ମାଣ୍ଡିଆ ଦାସ । ବିବାହିତା କନ୍ଧ ଯୁବତୀଙ୍କ ମଥାରେ ସିନ୍ଦୂର, ନାକରେ ନୋଲକ ଓ ଅଞ୍ଚଳରେ ସ୍ତନ । ଏମାନଙ୍କୁ ଦେଖି ଈର୍ଷାନଳରେ କାଜୋଡ଼ । ତେଣୁ ସେ ଉଦ୍ବୁକ ହୋଇ ଉଠିଲା ବାଗଲା ସହିତ ଘର ବାନ୍ଧିବାକୁ । କଳା ଜୀବନରେ ସ୍ୱତଃ ଶୂନ୍ୟତାର ଅନ୍ଧକାର ଘୋଟି ଆସେ । ପ୍ରଣୟୀ ବାଗଲା ଅନ୍ୟ ପ୍ରତି ଆସକ୍ତ, ବାପ ଘାଇ ଦୂରରେ । ବାପ ଯେଉଁ ଖାଦ୍ୟଶସ୍ୟ ସଞ୍ଚିତ ରଖି ଯାଇଥିଲା ତାହା ବି ନିଃଶେଷ ପ୍ରାୟ । ପୁରୁଷଙ୍କ ଅନୁପସ୍ଥିତିରେ ତାଙ୍କ ଜମି ବି ଅକର୍ଷିତ ରହିଯାଏ । ଅଭିଭାବକହୀନ କଳା ଉପରେ କୁତ୍ସିତ ଦର୍ଶନ କାଜୁ ପରଜାର ଦୃଷ୍ଟି ପଡେ । କାଜୁପରି ଚେହେରା କାଜୁ ପରଜାର—ଗାଁ ଗୋଠାକରେ ତା' ପରି ଅସୁନ୍ଦର କେହି ନଥିବେ—ନାକଟି ଗଇଁଠା ପରି, ମୁହଁ ହନୁମନ୍ତ ପରି ଇତ୍ୟାଦି ଇତ୍ୟାଦି । କାଜୁର ପ୍ରେମ ନିବେଦନ ଅପମାନ-ଜନକ ମନେହୁଏ କଳାର—ସେ ଗୋପନରେ ଆତ୍ମଗ୍ଲାନିରେ ବସି କାନ୍ଦେ । ଅନନ୍ୟୋପାୟ ହୋଇ କଳା ଓ ବିଲା ଠିକାଦାର ଅଧୀନରେ ରୋଡ଼ ମରାମତି କରିବାକୁ କୁଲି ହେଲେ । କୁଲି ହୁଏ ଅର୍ଥନୈତିକ ଶୋଷଣର ଶିକାର, କିନ୍ତୁ ନାରୀକୁଲି ଯୁଗପତ ଅର୍ଥନୈତିକ ଓ ଯୌନ ଶୋଷଣର ଶିକାର ହୁଏ । କଳା ବିଲାଙ୍କ ଘରେ ଦେହ ବିନିମୟରେ କ୍ରମଶଃ ଜମିଉଠେ ନାନା ଉପହାର—ଶାଢ଼ୀ, ବାସନା ତେଲ ଓ ସାବୁନ୍, ସ୍ନୋ ଗହଣା ଓ ପଇସା । ନୈତିକ କ୍ଷୟ ଆରମ୍ଭ ହୋଇଯାଏ କଳାର । ହଠାତ୍ ସୁକରୁ ଉପସ୍ଥିତ ହୁଏ କଳା ବିଲାଙ୍କ କୁଲିବସ୍ତିରେ । ଝିଅଙ୍କ ଅନିଚ୍ଛାକୁ ଉପେକ୍ଷା କରି ଠିକାଦାରର କର୍ମଚାରୀଙ୍କ ପ୍ରଲୋଭନକୁ ଜୟକରି ସୁକରୁ ଝିଅ ଦୁହିଁଙ୍କୁ ସେହି ଅଶୁଚି ଗ୍ଲାନିକର ପରିବେଶରୁ ଉଦ୍ଧାର କରି ଘରକୁ ନେଇଯାଏ । ଜ୍ୟେଷ୍ଠ ଝିଅ ବିଲା ଭାଗ୍ୟବତୀ । ଅନ୍ୟ ଗୋଟିଏ ଗ୍ରାମର ଯୁବକ ନନ୍ଦବାଲି ନିଜ ପାଇଁ ପାତ୍ରୀ ଅନ୍ୱେଷଣରେ ବାହାରିଥିଲା । ବିଲାକୁ ଦେଖି ସେ ପସନ୍ଦ କରେ । କିନ୍ତୁ କନ୍ୟାପଣ ନ ହେଲେ ବିବାହ ହୋଇ ପାରିବ ନାହିଁ । ତେଣୁ ସେ ସୁକରୁର ଗୋତି ହେବାକୁ ରାଜି ହୋଇଯାଏ । ଶ୍ରମଦ୍ୱାରା କନ୍ୟାପଣ ପରିଶୋଧ କରି ସେ ବିଲାକୁ ବିଭାହେବ । କୁଲିବସ୍ତି ଜୀବନ ପରେ ବିଲା ହୋଇ ଉଠିଥିଲା କଳାର ବନ୍ଧୁ ପରି—ଏବେ ସେହି ବିଲା ଯେତେ-

ବେଳେ ପାନସ୍ଥ ହୋଇଯାଏ ସେତେବେଳେ ଜଳ ଆହୁରି ବେଶୀ ଏକୁଟିଆ ହୋଇ ଉଠେ । ବୟସ ବଢ଼ି ଚାଲିଛି, ବ୍ୟର୍ଥତାବୋଧ ତାକୁ ପୀଡ଼ିତ କରି ଚାଲିଛି ।

ଛପ୍ପର ଘରଟି ପୋକ ଜଳର ନୈତିକ ଅବକ୍ଷୟ ଘଟାଏ; ଆଜି ଯେଉଁ ଧାନ ଜମି ଥିଲା ସୁକରୁର ପଞ୍ଜରହାଡ଼ ସମାନ ତାକୁ କ'ଣ ସେ ରକ୍ଷା କରିପାରେ ? ଜମି ସହିତ ସଂଲଗ୍ନ ଏହି ମଣିଷମାନଙ୍କ ଜୀବନ। ଦେହର ଝାଳରେ ସେମାନେ ଜମିରେ ପ୍ରାଣ ସଞ୍ଚାର କରନ୍ତି, ଯେପରିକି ଅନୁର୍ବର ଜମିକୁ ତୁଷ୍ଟକରି ଫସଲ ଦେବାକୁ ରାଜି କରିଥାନ୍ତି । କୌଣସି ବିପନ୍ନ ଅବସ୍ଥାରେ ସୁକରୁ ସେହି ଜମିକୁ ବନ୍ଧକ ଦେଇନାହିଁ । ବର୍ତ୍ତମାନ ଗୋଲି ଜୀବନରୁ ମୁକ୍ତିପାଇଁ ଜମିକୁ ବନ୍ଧକ ଦେବା କଥା ଭାବେ ସେ । ତେବେ କିନ୍ତୁ କମ୍ ପଡ଼ୁଏ ନାହିଁ, କାରଣ ସେ ଜାଣେ ଥରେ ବନ୍ଧକ ଦେଲେ ଜମି ସାହୁକାର ଗ୍ରାସରେ ଯିବ । ବାପର ଦ୍ୱିଧାରେ ରାଗିଯାଏ ମାଣ୍ଡିଆ । ଏଣେ ଖବର ଆସି ପହଞ୍ଚେ ତହସିଲଦାର ଖଜଣା ଆଦାୟ କରିବାକୁ ଆସିଛି । ଖଜଣା ନ ପାଇଲେ ସୁକରୁକୁ ଜମିରୁ ଉଚ୍ଛେଦ କରି ଅନ୍ୟକୁ ଦେଇଦେବ ସେ । ମାଣ୍ଡିଆ ବାପ ବିରୋଧରେ ଅଭିଯୋଗ କରେ, ଜମିକୁ ବଂଧକ ଦେଲାନାହିଁ ପ୍ରାଣତୁଲ୍ୟ ଭାବି, ସେହି ଜମି ଏବଂ ହସ୍ତାନ୍ତରିତ ହେବାକୁ ବସିଛି । ନିଃସଙ୍ଗ ବୁଢ଼ା ମଣିଷଟି ଏବେ ସଂପୂର୍ଣ୍ଣ ଭାଙ୍ଗିପଡ଼େ, ଶେଷ ପର୍ଯ୍ୟନ୍ତ ସିଦ୍ଧାନ୍ତ ନେଲେ ଜମି ବଂଧକ ଦେଇ ମାଣ୍ଡିଆକୁ ମୁକ୍ତ କରିବ । ଜମିରେ ମାଣ୍ଡିଆ ଯାହା ଉତ୍ପାଦନ କରିବ ତାହା ସାହୁକାରକୁ ଦିଆଯିବ, ତାହା ହେଲେ ଶୀଘ୍ର କରଜ ପରିଶୋଧ ହୋଇ ପାରିବ । ବଂଧକ ବ୍ୟାପାରରେ ରାମଚନ୍ଦ୍ର ବରେଇ ଅନିଚ୍ଛାର ଭାନ କରେ । ଅନେକ ଅନୁନୟ ବିନୟ ପରେ ଜମି ଦେଖିବାକୁ ରାଜିହୁଏ । ଦେଖି ଅବଶ୍ୟ ଖୁବଣ ଖୁସିହୁଏ ମନେ ମନେ, କିନ୍ତୁ ପ୍ରକାଶ୍ୟରେ କହେ ଜମି ଏକଦମ୍ ବାଜେ । ଅନେକ ତର୍କ ବିତର୍କ ପରେ ଠିକ୍ ହୁଏ, ଜମି ବଂଧକ ବଦଳେ ପୁଅ ବୁଝିନ୍ତୁ, କେବଳ ସୁକରୁ ମୁକ୍ତ ହେବ ଦାସତ୍ୱରୁ । ପଚଶ ଟଙ୍କା ଦେଲେ ଜମି ଫେରସ୍ତ ପାଇବ ସୁକରୁ । କୌଣସି ଦଲିଲ ନାହିଁ,ସାକ୍ଷୀ ନାହିଁ,

ଦମ୍ଭ ଓ ଦର୍ପର ଏକମାତ୍ର ସାକ୍ଷୀ । ଶୂନ୍ୟ ପରିତ୍ୟକ୍ତ ଘରକୁ ଭଗ୍ନମନୋରଥ ଅସହାୟ ବୁଢ଼ା ମଣିଷଟି ଫେରି ଆସିଛି, ଏବଂ ତା ପରେ ପାଇଁ କୁଲିକାମରୁ ମୁକ୍ତକରି ଆଣିଛି ଝିଅ ଦୁହିଁଙ୍କୁ । ଅନ୍ୟର ଜମିରେ ବାପଝିଅ ମଜୁରି ଖଟନ୍ତି । ପରେ ଗାଁର ପ୍ରଧାନଙ୍କୁ ଅନୁନୟ କରି ଦୂରରେ ଖଣ୍ଡେ ଜମି ପାଏ । ନିଜେ ଓ ଝିଅ ଜୋଇଁ ନିଧବାଳି ଖଟନ୍ତି ସେହି ଜମିରେ । ନୂଆ ଜମି ଫସଲ ପରିପୂର୍ଣ୍ଣ ହୋଇ ଉଠିଲେ ମୁଗ୍ଧ ଦୃଷ୍ଟିରେ ଅନେଇ ରହେ ସୁକରୁ ଜାନି । ମନେହୁଏ ସେ ଯେପରି ବନଭୂମି ଓ କ୍ଷେତଭରା ଫସଲର ସହୋଦର ଭାଇ । କିନ୍ତୁ ବିଷାଦ ହାତରୁ ମୁକ୍ତିନାହିଁ—ପୁଅ ଦୁହେଁ ଗୋତି ଖଟୁଛନ୍ତି, ପୁଅଝିଅଙ୍କ ଭିତରୁ କାହାକୁ ବିବାହ ଦେଇପାରି ନାହିଁ, ମୃତ୍ୟୁ ପରେ ତାର ଆତ୍ମା ଶାନ୍ତି ପାଇବ କିପରି ?

ସାହୁକାର ରାମଚନ୍ଦ୍ର ସୁକରୁର ଜମି ବନ୍ଧକ ନେବାପରେ ଗ୍ରାମରେ ଆଉ କିଏ ଜମି ବିକିବ କି ନାହିଁ ଜାଣିବା ପାଇଁ ଆସି ଉପସ୍ଥିତ ହୋଇଛି । ସମସ୍ତଙ୍କୁ ଜଣାଏ, ସେ ଏହି ଗ୍ରାମରେ ଶସ୍ୟଭଣ୍ଡାର ନିର୍ମାଣ କରିବ, ପୋଖରୀ ଖୋଳିବ । ଅଧିକନ୍ତୁ ଅଯାଚିତ ଭାବରେ ଗ୍ରାମଲୋକଙ୍କୁ ମୁକ୍ତହସ୍ତରେ କରଜ ଦେବାକୁ ବି ଚାହେଁ ସେ—ଖଜଣା ଦେବାପାଇଁ, ବଳଦ କିଣିବା ପାଇଁ, ଡମ୍ବଙ୍କୁ ଚମଡ଼ା ବ୍ୟବସାୟ କରିବା ପାଇଁ । କାରଣ ସେ ଚାହେଁ ସ୍ୱାସ୍ଥ୍ୟବାନ ପରଜା ଯୁବକମାନେ ତା'ର ଗୋତି ହୁଅନ୍ତୁ, ଆହୁରି ବେଶି ବେଶି ଜମି ହସ୍ତଗତ ହେଉ ତାର, ଟଙ୍କା ସୁଧବଳରେ ସ୍ଫୀତ ହୋଇ ଉଠୁ । ଦିନବେଳା ସ୍ତ୍ରୀଲୋକଙ୍କୁ ନିଜର ଆର୍ଥିକ କ୍ଷମତା ଓ ସାମର୍ଥ୍ୟ ବିଷୟରେ ବୁଝାଏ ଓ ହୃଦୟବିଦାର ବର୍ଣ୍ଣନା ଶୁଣାଏ, ଆଉ ରାତିରେ ଶଯ୍ୟାସଙ୍ଗିନୀ ସନ୍ଧାନରେ ମଧ୍ୟସ୍ଥିଙ୍କୁ ପଠାଏ । ବାହାରର ମଣିଷ ସେ, କିପରି ଜାଣିବ କେଉଁଟା ସ୍ତ୍ରୀଲୋକଙ୍କ ପୋଖରୀ ଆଉ କେଉଁଟା ପୁରୁଷଙ୍କ ପୋଖରୀ । ଏହି ଛଳନା କରି ସେ ସ୍ତ୍ରୀଲୋକଙ୍କ ଗାଧୁଆ ପୋଖରୀରେ ସ୍ନାନ କରେ ଓ ସ୍ନାନରତା ଯୁବତୀ-ମାନଙ୍କ ପ୍ରତି ଇତର ଦୃଷ୍ଟି ପକାଏ । ଅଧିକନ୍ତୁ ସ୍ନାନ ପରେ

ପରେ ଚନ୍ଦନ ଲଗାଇ ପ୍ରାର୍ଥନା ଓ ମନ୍ତ୍ରପାଠ କରି ନିଜର ଛଦ୍ମ ସାଧୁତ୍ରିର ଦେଖାଇବାକୁ ତ୍ରୁଟି କରେ ନାହିଁ, ଏପରିକି ପ୍ରାଣାୟାମ କରି ବସେ । ଏହି ସାହୁକାର ମଧୁକୁ ଲଗାଏ ଜଳିକୁ ପ୍ରଲୁବ୍ଧ କରିବାକୁ । ଜଳିର ଆଚରଣର ଚମତ୍କାର ବିଶ୍ଳେଷଣ କରି ଗୋପୀନାଥ ବୁଝାଉଛନ୍ତି ଯେ, ସେ ଯେପରି ବହିଃରଙ୍ଗ ସାମାଜିକ ବିନ୍ୟାସର ଗୂଢ଼ତାକୁ ଉଦ୍‌ଘାଟିତ କରି ପାରନ୍ତି ଠିକ୍ ସେପରି ମଣିଷର ମନୋଜଗତକୁ ଉନ୍ମୋଚିତ କରିଥାନ୍ତି । ଅନ୍ୟ ଯୁବତୀଙ୍କୁ ଛୁଡ଼ି ସାହୁକାର ତାକୁ ହିଁ କାମନା କରିଛି, ଏଥିରେ ଜଳି ଶ୍ରଦ୍ଧାବୋଧ କରେ । ଆହୁରି ସାହୁକାରକୁ ଅବଜ୍ଞା ଉପେକ୍ଷା କରି ବିଦ୍ୱେଷମିଶା ଆନନ୍ଦ ପାଏ ସେ । ଏଣେ କିନ୍ତୁ ମଧୁ ତିନି ଚାରି ଦିନ ନ ଆସିଲେ ଅସ୍ଥିରତା ବୋଧ କରିଥାଏ । ଦିନେ ମଧୁ ଚାରିଦିନର ମଜୁରି ସହିତ ସମାନ ଆଠଅଣା ପଇସା ଆଣି ଦିଏ, ଜଳି ପ୍ରଥମେ ଭାବେ ଏଇ ପଇସାକୁ ସେ ଫିଙ୍ଗି ଦେବ, କିନ୍ତୁ ଶେଷ ପର୍ଯ୍ୟନ୍ତ ଲୁଗାକାନିରେ ଲୁଚେଇ ବାନ୍ଧି ରଖେ । ଶାଢ଼ୀ ଉପହାର ଯେଉଁଦିନ ଗ୍ରହଣ କରେ, ସେଦିନ ମଧୁ ଯେ ତାକୁ ସାହୁକାର ଘରେ ଢୁକେଇ ଦେବ ଏଥିରେ ଆଉ ସନ୍ଦେହ ରହେ ନାହିଁ । ପରେ ଅପରାଧ ବୋଧରେ ପୀଡ଼ିତ ହୁଏ, ମଧୁକୁ ଦୁଇଦିନ ଏଡ଼େଇ ଚଳେ, କିନ୍ତୁ ଗରିବ ସ୍ତ୍ରୀଲୋକଟି ଉପହାରର ଲୋଭ ସମ୍ବରଣ କରିପାରେ ନାହିଁ । ଦିନେ ଝଡ଼ ରାତିରେ ବାପଘରର ନିଃସଙ୍ଗ ନିର୍ବେଦମୟ ଜୀବନରୁ ମୁକ୍ତି ଆଶାରେ ଜଳି ମଧୁ ସଙ୍ଗରେ ବାହାରିଯାଏ । ତା ପରେ ସେ ନିୟମିତ ସାହୁକାର ଘରକୁ ରାତିରେ ଯାଇଥାଏ । ସାହୁକାରର ମାଙ୍କଡ଼ସା ଜାଲରେ ଜଡ଼ିତ ହୋଇପଡ଼େ ସେ, ଜମିଟି ତ ଆଗରୁ ସାହୁକାରର ଫାଶରେ ଧରାପଡ଼ିଛି । "ପୃଥିବୀର ଏଇ ସବ ଜିନ୍ତୁ ଲେକଦେଉ ଦାବି ଏପେ/ ସବଇ ନେଯୁ, ନାରୀକେ ଓ ନିଯେ ଯାଯୁ ।"

ଦିନେ ସାହୁକାରର ଲୋକ ଆସି ସୁକରୁର ଜମିରେ କମଳା ଗଛ ଲଗାଇ ଦେଲେ । କମଳା ଗଛ ଲଗାଇବା ଅର୍ଥ ସାହୁକାର ଆଉ ଜମି ଛାଡ଼ିବାର ମତଲବରେ ନାହିଁ । କମଳା ଗଛ ଜମିର ରସ ଶୋଷିନେବ, ଜମି ଅନୁର୍ବର ହୋଇ ଉଠିବ । ସୁକରୁ ପ୍ରତିବାଦ କରେ, କିନ୍ତୁ କାହାର ସମର୍ଥନ ପାଏ ନାହିଁ । ବରଂ ସାହୁକାର ବୁଝାଏ କମଳା ଗଛରୁ ଉପାର୍ଜନ ହେବ ବେଶି, ଫଳତଃ ସୁକରୁର ଋଣ ଶୀଘ୍ର ଶୁଝି ହୋଇଯିବ । ଏମିତି ଦିନେ ବ୍ୟର୍ଥ ପ୍ରେମିକ କାଉ ପରଜା ଝିଅ ଜିଲିର କୌଣ କାର୍ଯ୍ୟକଳାପ କଥା ସୁକରୁକୁ ଆସି ଜଣାଇ ଦିଏ । ମର୍ମାହତ ସୁକରୁର ଆତ୍ମମର୍ଯ୍ୟାଦା ଯେପରି ଧର୍ଷିତ ହୋଇଯାଏ । ସାହୁକାର ତାହା ହେଲେ ତାର ଶେଷ ସମ୍ପଦଟିକୁ ବି ଅପହରଣ କରିଛି । ଝିଅ ବାକ୍ସରେ ଗୋପନରେ ରଖାଯାଇଥିବା ଉପହାର ସାମଗ୍ରୀ ଦେଖି ବୁଝିପାରେ ମର୍ମାନ୍ତିକ ସତ୍ୟଟିକୁ । ଯେତେବେଳେ ସେ ଜିଲିକୁ ଘରୁ ବହିଷ୍କାର କରିଦିଏ, ସେତେବେଳେ ତା ଆଗରେ ସାହୁକାର ଦ୍ୱାର ଛଡ଼ା ଆଉ ସବୁ ଦ୍ୱାର ବନ୍ଦ ହୋଇ ଯାଇଥାଏ । ଗ୍ରାମବାସୀ ସବୁ ମିଶି ସାହୁକାର ଆସ୍ଥାନକୁ ଗଲେ ସେ ଆଦୌ ବିଚଳିତ ହୁଏ ନାହିଁ । ସୁକରୁ କନ୍ୟାପଣ ଗ୍ରହଣ କରିନାହିଁ, ସ୍ୱେଚ୍ଛାରେ ଆସିଛି ଜିଲି ଏବଂ ସେ ତାକୁ ବିଭାହେବ । ରାମଚନ୍ଦ୍ର ନିଜ ସ୍ତ୍ରୀ ସହିତ ଜିଲିକୁ ରଖେ ନାହିଁ, ରଖେ କଦମଝୋଲାର ଖମାର ଘରେ ରକ୍ଷିତାଟିଏ ପରି । ସେଠି ଜିଲି ଗଲାଦିନର କଥା ଭାବେ, ଏକା ଓ ଅସୁଖୀ ହୋଇ ଉଠେ । କିନ୍ତୁ ସେ ଏହି ଜୀବନ ସହିତ ଧୀରେ ଧୀରେ ଅଭ୍ୟସ୍ତ ହୋଇଯାଏ । ଲୋକମାନେ ଯେ ତାର ଆଦେଶକୁ ଅପେକ୍ଷା କରନ୍ତି କେବେ କେବେ ଏକଥା ଭାବି ବି ଗର୍ବବୋଧ କରେ । ଜିଲିର ଅବକ୍ଷୟ, ଗୋପୀନାଥ ମହାନ୍ତିଙ୍କ ହାତରେ ପରଜା ସମାଜର ଅବକ୍ଷୟର ପ୍ରତୀକ ହୋଇଯାଏ ।

ସାହୁକାରର ମଇଁଷି ଚରେଇବାର ସୁଯୋଗରେ ଜଙ୍ଗଲରେ ବେଆଇନ ମଦ ଗନ୍ଧ ମାଣ୍ଡିଆ ଶହେ ଟଙ୍କା ଜମେଇଛି । ଚିଗ୍ରଭ ଭାବନ୍ତି ନିଜର ମୁକ୍ତିପଣ ଓ ଜମିକୁ ମୁକ୍ତ କରିବା ପାଇଁ ଯଥେଷ୍ଟ ହେବ ଏ ଟଙ୍କା । ସୁକରୁ ହାତକୁ ଟଙ୍କା ଦେଲେ ସେ ମୁହଁରେ ଅବଶ୍ୟ ମଦ ବାନ୍ଧିବ । ବଡ଼ ଦୋଷ ବୋଲି କହିଲା, କିନ୍ତୁ ଖୁମ୍ରିମନରେ ଟଙ୍କା ଲୁଚାଇ ରଖିଲା । ଏହି ଟଙ୍କାହିଁ ତାଙ୍କ ମୁକ୍ତିର ଅଭିଜ୍ଞାନ । ପରଦିନ ସାହୁକାରକୁ ଟଙ୍କା ଦେଇ ଜମି ଫେରାଇ ଆଣିବା ଉଦ୍ୟମ ବ୍ୟର୍ଥ ହୁଏ । ସାହୁକାର କହେ, ଦଲିଲରେ ତିରିଶ ବର୍ଷ ପାଇଁ ଜମି ବନ୍ଧକ ପଡ଼ିଛି । ସାକ୍ଷୀ ଅଛନ୍ତି, ଯେ-ସେ ସାକ୍ଷୀ ନୁହେଁ ସ୍ୱୟଂ ରେଭିନ୍ୟୁ ବା ରେଭେନ୍ୟୁ ଇନସପେକ୍ଟର ତାର ସାକ୍ଷୀ । ଘରକୁ ଫେରିଲେ ବାପପୁଅ କଳି କରନ୍ତି । ପୁଅ କହେ, ବାପ ଗଛକାଟି ଧରାପଡ଼ିଥିଲା ବୋଲି ତାଙ୍କ ବିପତ୍ତିର ସୂତ୍ରପାତ । ବାପ କହେ, କାହିଁକି ମାଣ୍ଡିଆ ବେଆଇନ ମଦ ଗନ୍ଧ ଧରା ପଡ଼ିଲା ? ଏହି ଉପଜାତିର ଲୋକ ଆଇନ୍ ଅଦାଲତ ନାମରେ ଆତଙ୍କିତ ହୁଅନ୍ତି । ତଥାପି ନନ୍ଦବାଲାର ପରାମର୍ଶକ୍ରମେ ସୁକରୁ ଜମି ଉଦ୍ଧାର ପାଇଁ ଅଦାଲତର ଶରଣ ନେବାକୁ ସିଦ୍ଧାନ୍ତ ନେନେ । ସେହି ଉଦ୍ଦେଶ୍ୟରେ ସେ କୋରାପୁଟ ଯାଏ, ପନ୍ଦର ଟଙ୍କା ଖର୍ଚ୍ଚ କରି ଦରଖାସ୍ତ କରେ, ଲେଖୁ ତାଙ୍କୁ ମାମଲାରେ ଜିତେଇ ଦେବାର ପ୍ରତିଶ୍ରୁତି ଦିଏ । ଏଣେ ସାହୁକାର ସହିତ ଗ୍ରାମ ପ୍ରଧାନ ଓ ଅନ୍ୟମାନଙ୍କର ବନ୍ଦୋବସ୍ତ ହୋଇଯାଏ । ଅମିନ ଓ ରିଡର୍ ତ ସାହୁକାରର ବନ୍ଧୁ—ସେମାନେ ଗୃହାନ୍ତ ସୁକରୁର ଜମି ସାହୁକାରର ହୋଇଥାଉ । ସେମାନେ ବିକଳ୍ପ ଜମି ଦେବେ ସୁକରକୁ । ସୁକରୁ କିନ୍ତୁ ଏ ବନ୍ଦୋବସ୍ତ କଥା କିଛି ଜାଣିପାରେ ନାହିଁ, ସେ ଲେଖକୁ ଟଙ୍କା ଦେଇ ମାମଲାରେ ଜୟ ସମ୍ବନ୍ଧରେ ନିଶ୍ଚିନ୍ତ ହୋଇ ଘରେ ବସିଥାଏ । କୁଟିଳ ଶଠତା କିନ୍ତୁ ତାକୁ ଠକାଇଛି । ନିର୍ଦ୍ଦିଷ୍ଟ ମଙ୍ଗଳବାର ଦିନ ସାକ୍ଷୀମାନଙ୍କୁ ନେଇ ସୁକରୁ କୋରାପୁଟ ଯାଏ

ଏବଂ ହଠବାକ୍ ହୋଇ କରଣୀ ମୁହଁରୁ ଶୁଣେ ଯେ ଗତ ମଙ୍ଗଳବାର ଦନ ମାମଲାର ତାରଖ ଥିଲା । ବାଦୀ ହାଜର୍ ନ ହେବାରୁ ମାମଲା ଖାରଜ୍ ହୋଇ ଯାଇଛି । ମାଣ୍ଡିଆ କ୍ଷିପ୍ତ ହୁଏ, ସୁକରୁ ହୁଏ ସ୍ତବ୍ଧ ।

ମାଣ୍ଡିଆ ଘୋଷଣା କରେ, ନପୁତ୍ତକୁ ସେ ବଶ୍ୱାସ କରେ ନାହିଁ । ଦର୍ମ୍ମ ପ୍ରତ ତାର ଆସ୍ଥା ବ ନାହିଁ । ସେମାନେ କୃଷକ, ଜମିଚାଷ କର ବଂଚନ୍ତି । ଜମି ଅଛି ତ ସେମାନଙ୍କ ଅସ୍ତିତ୍ୱ ଅଛି । ସାହୁକାର ରାଜ ହେଉ କ ନ ହେଉ, ସେମାନେ ତାକୁ ଟଙ୍କା ନେବାକୁ ବାଧ କରବେ, କନ୍ତୁ କୌଣସି ପ୍ରକାରେ ଜମି ଛାଡବେ ନାହିଁ । କନ୍ତୁ ମାଣ୍ଡିଆ ଜାଣେ ନାହିଁ ଯେ, ମଣିଷ ଜମି ଅଧିକାର କରେ ନାହିଁ, ମଣିଷ ହିଁ ଜମିଦ୍ୱାରା ଅଧିକୃତ ହୁଏ । "ମାଟି ମଣିଷର ନୁହେଁ, ମଣିଷ ମାଟିର । ମଣିଷର ମୁଠା ଭିତରେ ଥାଇ ମାଟି ହସୁଥାଏ, ଅପେକ୍ଷା କରୁଥାଏ ମଣିଷ କେତେବେଳେ ଝୁଣ୍ଡବ... ।" ମାଟିର ବଳ ବଢିବ—ଅବଧାରତ ଭାବରେ ସେହିଦନ ଆସିବ, ଯେଉଁଦନ ମଣିଷ ଭୂମିଶଯ୍ୟା ଗ୍ରହଣ କରବ; ଆଉ ଶରୀର ମାଟିକୁ ଉର୍ବରତା ଦେବ । ଯାହାହେଉ, ଏବେ ଆଉ ସୁକରୁ ଆଗରେ ଅନ୍ୟ କୌଣସି ବାଟ ନଥାଏ—ପ୍ରାର୍ଥନା, ଅନୁନୟ ଓ ବନୟ ଭିନ୍ନ । ଦୁଇ ପୁଅଙ୍କୁ ଧର ସେ କଦମଖୋଲର ଖମାର ଘରକୁ ଯାଏ, ସାହୁକାର ଏବେ ତାର ଜାମାତା ଅଟେ ! ସାହୁକାର ଦ୍ୱାର ଖୋଲିଲା ମାତ୍ରେ ତନଜଣ ପରାଜତ ମଣିଷ ସିଧା ଗୋଡ଼ତଳେ ପଡଯାନ୍ତି । ସେହି ଧୂଳି ଅବଲୁଣ୍ଠିତ ପରାଜତ ମଣିଷଗୁଡକୁ ମୁହୂର୍ତ୍ତେ ଗୋଇଠା ମାର ଗୃଳଥାଏ । ସାହୁକାର—ଆଉ ନଷ୍ଠୁର ଭାବରେ କହୁଥାଏ, "ଜମି ନେଲି, ଗୋଟାଏ ଭଉଣୀକୁ ନେଲି । ଆହୁର ଗୋଟାଏ ଭଉଣୀକୁ ନେବ, ଆଉ ଯେତେ ବାକି ହେବ ସମସ୍ତିଙ୍କି ନେବ...ଗୋତ ଖଟେଇ ଖଟେଇ ଜୀବନଯାକ ନାକକୁ ତଳେ ଘୋଷାରୁ ଥିବ, ତେବେ ଯାଇଁ ମୋ ନାଁ

ରାମଚନ୍ଦ୍ର ସାହୁକାର ।” କଚଜାନୁ ମଣିଷଗୁଡ଼ାଙ୍କୁ ପଟକାର୍ ଗ୍ୟାଲୁ ବା ବେଣ୍ୟା ପିଲା ବୋଲି ସମ୍ବୋଧନ କରିବାରୁ ପରଜା ଉପଜାତିର ତିନିଜଣଙ୍କ ମୁଣ୍ଡ ଭିତରେ କେଉଁଠି କଣ ରଟ୍ ରଟ୍ ହୋଇ ଛିଣ୍ଡିଗଲା, ପ୍ରଚଣ୍ଡ ବିସ୍ଫୋରଣ ଘଟିଗଲା । କ୍ଷିପ୍ତ ମଣ୍ଡିଆ ଜାନିର ଟାଙ୍ଗିଆ ଝଲସି ଉଠିଲା, “ଆଖି ପିଛୁଡ଼ାକେ ସେ ଟାଙ୍ଗିଆ ଉଞ୍ଚାଇ ପାହାରେ ପକାଇଲା, ବାପପୁଅ ତିନିହେଁ ମିଶିଗଲେ । ହଣାହେଲା ଗଛପରି ଢୁଲ୍ କରି ସାହୁକାର ତଳେ ପଡ଼ିଗଲା, ମାଣ୍ଡିଆ ଜାନି ପାହାରକୁ ପାହାର କହି ଚାଲିଥାଏ, “ଭୋଗ କରି ପାରିଲୁ ନାହିଁ ଭୋଗ କରିପାରିଲୁ ନାହିଁ ।” ସେହି ଭୟଙ୍କର ଦୃଶ୍ୟ ଦେଖି ଜନି ବଳିବଳେଇଲା ପରି ରଡ଼ିଗୁଡ଼ ଦଉଡ଼ି ପଳାଇଲା । ସେତେବେଳକୁ ପିଚକାରୀ ମାରିଲା ପରି ରକ୍ତ ବାହାରି ବାପପୁଅ ତିନିଙ୍କ ମୁହଁ, ଆଖି ଲୁଗାପଟା ଜୁଡ଼ୁବୁଡ଼ୁ କରି ଦେଲାଣି । ବାପପୁଅ କୁଣ୍ଢାକୁଣ୍ଢି ହୋଇ କାନ୍ଦିଲେ, ରକ୍ତରେ ଲୁହ ମିଶିଗଲା । ତିନିଜଣ ସେଇଠୁ ସେହିପରି ସିଧା ଯାଇଁ ଲକ୍ଷ୍ମୀପୁର ପୋଲିସ୍ ଥାନାରେ ଆତ୍ମସମର୍ପଣ କରନ୍ତି । ସେମାନେ ମଣିଷ ମାରିଛନ୍ତି, ତାଙ୍କୁ ଯୋଉ ଦଣ୍ଡ ଅଛି ସେହି ଦଣ୍ଡ ମିଳୁ ।

ଗୋପୀନାଥ ମହାନ୍ତିଙ୍କ ‘ପରଜା’ ଉପନ୍ୟାସର ପ୍ରାୟ ଚାଳିଶି ବର୍ଷ ପରେ ପ୍ରକାଶିତ ବଙ୍ଗଳା ଉପନ୍ୟାସରେ ବି ଦେଖାଯାଏ, ଉପଜାତିର ମଣିଷଙ୍କ ମଧ୍ୟରେ ଏବେ ବି ଏପରି ବିସ୍ଫୋରଣ ଘଟେ । ପ୍ରଫୁଲ୍ଲ ରାୟଙ୍କ ‘ଆକାଶେର ନୀଚେ ମାନୁଷ୍’ ଉପନ୍ୟାସରେ ଧର୍ମା ମାରାମୃକ ଭାବରେ ଆହତ ହୋଇ ବି ତିନିଟା ଶର୍ତ୍ତା ବାଘଛୁଆ ଧରିଥିଲା । ଭାବିଥିଲା ଆମେରିକାର ସାହେବକୁ ଛୁଆ ତିନିଟା ବିକି ଦୁଇ ହଜାର ଟଙ୍କା ପାଇଲେ ଋଣ ପରିଶୋଧ କରି ସେମାନେ ସପରିବାର ମୁକ୍ତ ମଣିଷ ହୋଇ ପାରିବେ, ତାଙ୍କୁ ବନ୍ଧା କୃଷକ ହୋଇ ରହିବାକୁ

ହେବ ନାହିଁ ଆଉ । କିନ୍ତୁ ଋଣ ପରିଶୋଧ କରିବାକୁ ଯାଇ ବୁଝିଲେ, ଧାରର ପରିମାଣ ଦୁଇହଜାର ଟଙ୍କା ନୁହେଁ, ପାଞ୍ଚ ହଜାର ଟଙ୍କା; ଯେପରି ବୁଝିଥିଲେ ସୁକରୁ ପାଞ୍ଚଶ ଟଙ୍କା ଦେଲେ ବି ଜମି ଫେରସ୍ତ ମିଳିବ ନାହିଁ, ଜମି ବନ୍ଧକ ରହିଛି ତିରିଶି ବର୍ଷ ପାଇଁ । ସୁକରୁ ପରି ପରାଧୀନ ଭୂମିଦାସ ଧର୍ମା ଟୁଣ୍ଡିରେ ବିସ୍ଫୋରଣ ଘଟିଥିଲା । ପ୍ରଫୁଲ୍ଲ ରାୟଙ୍କ 'ଧର୍ମାନ୍ତର' ଉପନ୍ୟାସରେ ରାମଧାରୀଙ୍କ ନାଗରା ଓ ତା ଦାରୱାନ୍‌ର ବୁଟ୍ ମାଡ଼ରେ ପୁଅ ଯେତେବେଳେ ରକ୍ତାକ୍ତ ସେତେବେଳେ ଖମାରର ଅନ୍ୟପଟ ବାଉଁଶ କାଟୁଥିବା ଗୌରୁନାଥ ଛୁଟି ଆସିଛି । ରକ୍ତାକ୍ତ ପୁଅକୁ ଦେଖି ଗୌରୁନାଥ ଦେହରେ କୌଣସି ଅପାର୍ଥିବ ଶକ୍ତି ଅବତରଣ କରିଛି, ସେ ଶାଣିତ ଦାଆ ଧରି 'ବନ୍ଦକର ବନ୍ଦକର' ବୋଲି ଚିଙ୍କି ଉଠିଛି । ଗୌରୁନାଥ ଦାଆ ଉଠେଇଛି; ସୁକୁରୁ-ମାଣ୍ଡିଆ-ଚିଡ଼ା ଟାଙ୍ଗିଆ ଉଠାଇ ଷାଣ୍ଡ ହୋଇ ନାହାନ୍ତି—ତାଙ୍କ ପଶୁରାମ କୁଠାର ପଡିଥିଲା ନାହିଲେଲୁପ ଭୂମିଲୋଲୁପ ସାହୁକାର ରାମଚନ୍ଦ୍ର ଷଣୋଇ ବେକରେ । ଗୋପୀନାଥଙ୍କ ଉପନ୍ୟାସ ଓ ପ୍ରଫୁଲ୍ଲ ରାୟଙ୍କ ଉପନ୍ୟାସ ସମାନ ସ୍ତରର ନୁହନ୍ତି, କିନ୍ତୁ ସ୍ୱଳଶ ବର୍ଷର ବ୍ୟବଧାନରେ ଲେଖା ଦୁହିଁଙ୍କ ଉପନ୍ୟାସ ପ୍ରମାଣିତ କରେ ଯେ, ଭାରତବର୍ଷୀୟ ସମାଜର ଏ ମଧ୍ୟରେ ଅନେକ ପରିବର୍ତ୍ତନ ଘଟିଛି, ତଥାପି ଏବେ ବି ଶୋଷଣ ଓ ଶୋଷକ ବିରୋଧରେ ଉପଜାତିର ମଣିଷଙ୍କ ପ୍ରତିବାଦ ସ୍ୱତଃସ୍ଫୂର୍ତ୍ତି ବିସ୍ଫୋରଣ ସ୍ତରରେ ହିଁ ରହିଯାଇଛି ।

ଗୋପୀନାଥ ମହାନ୍ତିଙ୍କର ଏହି ଦୁଇଟି ଉପନ୍ୟାସ ପ୍ରଥମ ସ୍ତରରେ ପାରିବାରିକ କାହାଣୀ—କପିର ହଉଡ଼ୁ-ପୁଷୁର ସମ୍ପର୍କ ନଷ୍ଟ ହୋଇ ଯାଇଛି, କପିର ସୁକରୁର ପୁଅକନ୍ୟା ସମଭିବ୍ୟାହାରରେ ଗଢ଼ା

ପରିତୃପ୍ତ ସନ୍ତୁଷ୍ଟ ସଂସାର ବିଧ୍ୱସ୍ତ ହୋଇ ପଡୁଛି । ଉପନ୍ୟାସ ଦୁଇଟିର କିନ୍ତୁ କାହାଣୀ ପରିବାରର ବୃତ୍ତ ଅତିକ୍ରମ କରି ଗୋଷ୍ଠୀର ସଙ୍କଟ ଓ ଅବକ୍ଷୟର କାହାଣୀ ହୋଇ ଯାଇଛି । ଆଇନ ଅଦାଲତର ଜଟିଳତା, ରାଜକର୍ମଚାରୀଙ୍କ ଅର୍ଥଗୃଧ୍ନୁତା, କ୍ଷମତାଲିପ୍‌ସା ଓ ନାରୀଲୋଲୁପତା, ବାହାରୁ ଆସିଥିବା ସାହୁକାରଙ୍କ ସୁଧ, ଭୂମି ଓ ନାରୀ ଲୋଭ—ଶୋଷଣର ଏସବୁ ସୁବିନ୍ୟାସ ଉପଜାତିର ମଣିଷଙ୍କ ନର୍କୋଭ ଜୀବନଯାତ୍ରା, ତାଙ୍କ ଐତିହ୍ୟ ଓ ପରମ୍ପରାଗତ ଜୀବନ, ଏପରିକି ତାଙ୍କର ଅସ୍ତିତ୍ୱକୁ ନଷ୍ଟକରି ଦେଉଛି । ଏହି ଅବକ୍ଷୟର କାହାଣୀ କେବଳ କନ୍ଧ ବା ପରଜା ଉପଜାତିର କାହାଣୀ ନୁହେଁ, ଏହା ଭାରତବର୍ଷର ଯାବତୀୟ ଉପଜାତିର ଅସ୍ତିତ୍ୱ-ସଙ୍କଟର କାହାଣୀ । କିନ୍ତୁ ଗୋପୀନାଥ ମହାନ୍ତିଙ୍କ ଏହି ଦୁଇ ମହତ୍ ଉପନ୍ୟାସ ଶେଷ ପର୍ଯ୍ୟନ୍ତ ଏହି ବିଶିଷ୍ଟ ସ୍ତରକୁ ବି ଅତିକ୍ରମ କରିଯାଏ । ଉମାଶଙ୍କର ଯୋଶୀ କହନ୍ତି, ଅନେକ ସମୟରେ ଔପନ୍ୟାସିକ Makes the region reflect the contral agony of the times. ବାସ୍ତବିକ ଗୋପୀନାଥ ଉପଜାତିର ଜୀବନ ଓ ତାଙ୍କ ଆଞ୍ଚଳିକ ପଟ୍ଟଭୂମି ଅବଲମ୍ବନରେ କାଳର ଯନ୍ତ୍ରଣା ଓ ସଙ୍କଟକୁ ପ୍ରତିବିମ୍ବିତ କରିଛନ୍ତି । ଯେତେବେଳେ ସେ କାଳକୁ ଅତିକ୍ରମ କରି ସନାତନ ମାନସିକତା ସ୍ତରକୁ ଉତ୍ତୀର୍ଣ୍ଣ ହୋଇଯାନ୍ତି ଯେତେବେଳେ ତାଙ୍କ ସମ୍ପର୍କରେ ଜ୍ଞାନ-ପୀଠର ପ୍ରଶଂସାପତ୍ରରେ ଯାହା ଲେଖାଯାଇଛି ତାହା ନିର୍ଭୁଲ ସତ୍ୟ ବୋଲି ଉପଲବ୍ଧି କରିହୁଏ; ଯେଉଁଠାରେ ଲେଖାଯାଇଛି, 'In Mohanty's hands, the social is lifted to level of the metaphysical.' ଏକାନ୍ତ ସତ୍ୟ କଥା । କାହାଣୀ ଦୁଇଟିରେ କେବଳ ସ୍ଥୂଳ ଭୋଗସର୍ବସ୍ୱ ମୂଲ୍ୟବୋଧହୀନ ଆଧୁନିକ ସଭ୍ୟତା ବିରୁଦ୍ଧରେ ମୌଳିକ ସରଳ ଜୀବନ ଯାତ୍ରାର ବ୍ୟର୍ଥ ସଂଗ୍ରାମର ଇତିହାସ ବିଧୃତ

ହୋଇନାହିଁ । ଏହି ମଣିଷଗୁଡ଼ିକ ଯେପରି ଏହି ଦୁଇଟି ଉପନ୍ୟାସରେ ବ୍ରହ୍ମାଣ୍ଡବ୍ୟାପୀ ବିରୁଦ୍ଧ ଶକ୍ତିର ବିପକ୍ଷରେ ଏକ ଟ୍ରାଜିକ ସଂଗ୍ରାମରେ ଲିପ୍ତ ଅଛନ୍ତି । ପରାଜୟ ଅନିବାର୍ଯ୍ୟ ତାଙ୍କର । ଗୋପୀନାଥ ଜାଣନ୍ତି, ଏହି ସରଳ ପବିତ୍ରତା, ଏହି ଅପାପବିଦ୍ଧ ଶୁଚିତା ସମସ୍ତର ସଂହାମଠାରୁ ଆତ୍ମରକ୍ଷା କରିପାରିବ ନାହିଁ, ତାହାର ଅବକ୍ଷୟ ଅପ୍ରତିରୋଧ । କିନ୍ତୁ ସର୍ବନାଶର ମୁହାଁମୁହିଁ ଛିଡ଼ା ହୋଇଥିବା ଶାଳପ୍ରାଂଶୁ ସରଳ ଆଦିମ ମଣିଷମାନଙ୍କ ସହିଷ୍ଣୁ ପ୍ରତିରୋଧର କାହାଣୀ କେବଳ ଉପଜାତିର କାହାଣୀ ହୋଇ ରହିନାହିଁ, କେବଳ ଭାରତବର୍ଷର କାହାଣୀ ହୋଇ ମଧ୍ୟ ରହିନାହିଁ, ହୋଇ ଉଠିଛି ସର୍ବଜନୀନ, ପରାଜିତ ଅଥଚ ଅପରାଜେୟ ମଣିଷର ଉପାଖ୍ୟାନ । ( ଶ୍ରୀ ଅଶ୍ରୁକୁମାର ସିକଦାର ବଙ୍ଗଳା ସାହିତ୍ୟର ଅନ୍ୟତମ ବିଶିଷ୍ଟ ସମାଲୋଚକ । ତାଙ୍କ 'ନବୀନ ଯଦୁର ବଂଶ' ସମାଲୋଚନା ଗ୍ରନ୍ଥରୁ ପ୍ରବନ୍ଧଟି ସଂଗୃହୀତ ) ।



## INAUGURATION OF BERHAMPUR UNIVERSITY CAMPUS BY RASTRAPATI V. V. GIRI

**4th. MARCH 1972**



*Sitting L to R* : ⁂G. C. Rath; *B. Das, D. P. I.; Biswanath Das, Chief Minister; Sardar Jogendra Singh, Chancellor; V. V Giri, Rastrapati; R. P. Padhi, Vice-Chancellor; Brundaban Nayak, Minister; *Harihar Das; ⁂Sukumar Das; *Narsing Nayak.

*Standing L to R* : †B. N. Rath; ⁂T. P. Mahapatra, M. N. Biswal; †G. P. Panda; B. N. Mahapatra, Finance Officer; R. C. Rajguru, Registrar; J. Nayak, Executive Engineer; ✿H. C. Baxipatra; Syed Mumtaz Alli, Chief Engineer; *Sribatcha Mahapatra; †A. C. Padhi; S. S. Panda, Supdt. Engineer; †S. K. Mahapatra; ⁂C. C. Das; †K. B. Tripathi; ✿H. Patnaik,

⁂**Syndicate Member** †**Dean of Faculty**

# ପରିଶିଷ୍ଟ-୨

## ଡଃ ତ୍ରିପାଠୀଙ୍କ ଛାତ୍ରଜୀବନର ଦୁଇଟି ପ୍ରଶଂସାପତ୍ର

ପାଟନା କଲେଜ ଅଧ୍ୟକ୍ଷଙ୍କଠାରୁ ପ୍ରାପ୍ତ :

OFFICE OF THE PRINCIPAL
PATNA COLLEGE
Bankipore, the 9th August, 1934

This is to certify that Kunjbehari Tripathi has been a student of this college in the M. A. classes in Sanskrit for two years (1932-34). He was granted a post-graduate scholarship at this college for having stood first in the first class in Sanskrit Honours at the B. A. examination. His work is very favourably reported on by his professors who seem to have formed a good opinion regarding his work and character. He is a good debater and a keen sportsman and has been a member of the first hockey and football elevens in his hostel. He is one of the best students in the college. His conduct has always been satisfactory and to the best of my knowledge he bears an excellent character.

Sd/- **R. P. Khosla**, I. E. S.
Principal, Patna College

ଟି. ଏନ୍. ଜେ. କଲେଜର ଅଧ୍ୟକ୍ଷଙ୍କଠାରୁ ପ୍ରାପ୍ତ :

**T. N. J. COLLEGE,**
**BHAGALPUR.**

**D. O. I.**

The 29th February, 1936

This is to certify that Kunjabihari Tripathi read with me Comparative Philology and Poetics in the V & VII classes at Patna College during the sessions 1932-33 and 1933-34. He is intelligent, industrious and exceedingly well-mannered. He was always regular in his studies and had respect for law and order As a boarder of the Post Graduate Hostel of which I was warden he behaved admirably well. He played hockey and foot-ball regularly and took prominent part in the hostel activities—intellectual as well as social His conduct in the class-room and also in the hostel was very good and he bears an excellent moral character. In my opinion he is eminently fit for a post of Professor of Sanskrit in a first grade college.

**H. Thand,** I. E. S.
Principal.

# ପରିଶିଷ୍ଟ---୨




## ଡ଼: କୁଞ୍ଜବିହାରୀ ତ୍ରିପାଠୀଙ୍କର ଦୁଇଟି ଲେଖା

## ଅବଦାନ

[ ଓଡ଼ିଶାର କଲ୍ୟାଣାର୍ଥେ ପାରଳାଖେମୁଣ୍ଡି ରାଜପରିବାରର ଚନ୍ଦ୍ରାଣୀଙ୍କ ବଦାନ୍ୟତା ସମ୍ବନ୍ଧରେ ରଚିତ ]

ଶ୍ରୀମନ୍ତ ଉତ୍କଳ ଦେଶ ଭାରତବର୍ଷେ ଅଶେଷ
ସାହିତ୍ୟ-ସ୍ଥାପତ୍ୟ-କଳା-ଲୀଳା ଆସ୍ପଦ,
ନିଜ ସ୍ୱାର୍ଥେ ହୋଇ ବାଇ ଜାତୀୟ ସ୍ୱାର୍ଥ ହରାଇ
ତା ସୁତେ ହେଲେ ଶତ୍ରୁଙ୍କ ଆନନ୍ଦପ୍ରଦ ।
ସାରଙ୍ଗଗଡ଼ର ସାମନ୍ତ
ଆଚରିଲେ ଆତ୍ମଘାତୀ ନୀତି ଏମନ୍ତ । ୧ ।

ଗୁପତେ ପେଷିଲେ ଚର ବଙ୍ଗବାଦଶା ପାଶର
ବେଗେ ବାରବାଟୀ-ଦୁର୍ଗ କର ଧର୍ଷଣ,
ମୁକୁନ୍ଦ ଓଡ଼ିଶା ପାଇଁ ମହାରାଣୀ ଦୁର୍ଗେ ଥାଇଁ
ଉତ୍ତର ସୀମାନ୍ତେ କରୁଅଛନ୍ତି ରଣ ।
ଛପି ଛପି ଯବନ-ଥାଟେ
ଚର କଢ଼ାଇ ଆଣିଲେ ଅରଣ୍ୟବାଟେ । ୨ ।

ଅଇଲ କଳାପାହାଡ଼ ଭାଙ୍ଗିଲ ଲୁହାର ବାଡ଼
ପିଇଲେ ଫଉଜେ ମହାନଦୀର ପାଣି,
ସୁବର୍ଣ୍ଣ-ଥାଳୀରେ ହୀରା ପରଶିଲେ ନାରୀ-ହୀରା
ଓଡ଼ିଶା-ନୃପ ମୁକୁନ୍ଦଦେବଙ୍କ ରାଣୀ ।
ଉତ୍ତରୁ ଫେରନ୍ତେ ସାମନ୍ତ
ମୁକୁନ୍ଦେ ସଂହାର ହେଲେ ଯବନ-ହାତ । ୩ ।

ଗଙ୍ଗାଠାରୁ ଗୋଦାବରୀ ଉତ୍କଳ-ସାମ୍ରାଜ୍ୟ-ଶିରୀ
ଭୁଟିଲା, ଉତ୍କଳ ହେଲା ଛିନ୍ନ-ବିଛିନ୍ନ,
ଯବନେ ହୋଇଲେ ନୃପ ତହୁଁ ମରହଟ୍ଟା-ଭୂପ
ତଦନ୍ତେ ଉତ୍କଳ ହେଲା ଗୋରା-ଅଧୀନ ।
ଚତୁର୍ଦ୍ଧା ବିଭକ୍ତ ଓଡ଼ିଶା-
ଭୂମି ହେଲା ବିକଳାଙ୍ଗ ନାରୀ ସଦୃଶା । ୪ ।

ଶ୍ରୀରାମ ଭଞ୍ଜ ଭୂପତି କୃଷ୍ଣଚନ୍ଦ୍ର ଗଜପତି
ବିକ୍ରମଦେବ ରାଜନ ଶ୍ରୀହରିହର,
ସ୍ୱଦେଶୀ ଚନ୍ଦ୍ରଶେଖର ଶଶିଭୂଷଣ ଆବର
କୁଳବୃଦ୍ଧ ମଧୁବାବୁ ବ୍ରଜସୁନ୍ଦର ।
ସତ୍ୟବାଦୀ-ସଖା ମିଳିତ
ଉଦ୍ୟମେ ଓଡ଼ିଶାରାଜ୍ୟ ହେଲା ଘୋଷିତ । ୫ ।

ଉତ୍କଳ ବିଦ୍ୟାନଗରୀ ପାରଳା-ଖିମୁଣ୍ଡି-ପୁରୀ
ଜୟପୁର ଜମିଦାରୀ ଓଡ଼ିଆଭାଷୀ,
ଓଡ଼ିଶାରେ ନ ମିଶିବା- ଘୋଷଣାରେ ରାହିଦବା
ଗୁରୁତର ଅବସାଦେ ହୃଦୟ ଝାସି
କୃଷ୍ଣଚନ୍ଦ୍ର ପାରଳାଧୀଶ
ଶୋକାର୍ତ୍ତ ହୋଇଲେ, ହେଲା ଭୋଜନ ବିଷ । ୬ ।

ପାରଳାରାଜ ପିତୃବ୍ୟ ଚନ୍ଦ୍ରଦେବ ଚନ୍ଦ୍ରନିଭ
ସାହିତ୍ୟ-ସଙ୍ଗୀତ-କଳା-ଲୀଳା-ପ୍ରବୀଣ,
ପ୍ରାପ୍ତ ହୋନ୍ତେ ବିଷ୍ଣୁଲୋକ ପତ୍ନୀ ତାଙ୍କ ମହାଶୋକ
ଅନ୍ତେ ଯାପୁଥିଲେ ଶୁଦ୍ଧପୂତ ଜୀବନ ।
କୃଷ୍ଣଚନ୍ଦ୍ରେ ଅପାର ସ୍ନେହ
ଥିବାରୁ ପୁଚ୍ଛିଲେ ବାବୁ ! କି ହେଲା କହ । ୭ ।

ଗଜପତି ବଂଶଧର                    କୃଷ୍ଣଚନ୍ଦ୍ର ବୀରବର
ଭଣିଲେ ଜନନୀ ! ଶୁଣ ଯାହା ଘଟିଲା,
ଇଂରାଜ ରାଜଶାସନ                    କରିଛନ୍ତି ଉଦ୍‌ଘୋଷଣ
ପାରଳାପୁରୀ ମାନ୍ଦ୍ରାଜେ ଜାଣ ରହିଲା ।
ଆଜ୍ଞ ଗଜପତିଙ୍କ ସୁତ
ଚିରକାଳ ଉତ୍କଳରୁ ହେବେ ବିଯୁକ୍ତ । ୮ ।

ଏଥିକୁ କି ପ୍ରତିକାର                    ଅଛି, କହ, ବୀରବର !
ପୁଚ୍ଛନ୍ତେ ଜନନୀ ଉତ୍ତରିଲେ ରାଜନ,
"ଏକମାତ୍ର ଅଛି ବାଟ,                    ବିଲାତରେ ପାର୍ଲିମେଣ୍ଟ
ସର୍ବେସର୍ବା, ଏହା କରିପାରଇ ଆନ ।
କରି ମୁହିଁ ପଣ ଜୀବନେ
ବିଲାତ ଯିବି, ଅପରେ ଯିବେ ଗହଣେ । ୯ ।

ଅଜସ୍ର ହୋଇବ ବ୍ୟୟ                    ଯାହା ମୋ ଅଛି ସଞ୍ଚୟ
ସବୁ ପଛେ ସରୁ, ମୋର ନ ତୁଟୁ ମାନ,
ଏହା ଶୁଣି ଚନ୍ଦ୍ର-ରାଣୀ                    ଆଶିଷିଲେ ଶୁଭବାଣୀ
"ତଥାସ୍ତୁ, ନିଅ ମୋହର ସମ୍ପଦ ମାନ" ।
ଯାହାଥିଲା କଲେ ଅର୍ପଣ
ପୁଣ୍ୟ ଗଜପତି ବଂଶ ନାରୀରତନ । ୧୦ ।

ସଗହଣେ ମହାମତି                    କୃଷ୍ଣଚନ୍ଦ୍ର ଗଜପତି
ଭାରତବେଳା ବରଜି ବାଷ୍ପ-ବୋଇତେ,
ଲଣ୍ଡନେ ମିଳିଲେ ଯାଇ                    ରାଜପୁରୁଷେ ବୁଝାଇ
ଇଷ୍ଟଲଭ ବାହୁଡ଼ିଲେ ଉତ୍କଳସ୍ୱତେ ।
ଜୟପୁର ସହ ପାରଳା
ମିଶିଣ ଉତ୍କଳ-ଭୂମି ହେଲା ସଫଳା । ୧୧ ।

ଧନ-ଜନ-ଯଉବନ ନୁହେଁ କିଛୁ ଚିରନ୍ତନ
ଚିରନ୍ତନ ନୁହେଁ ଉଚ୍ଚ ପଦାଧିକାର,
ନିଜ ସ୍ୱାର୍ଥେ ହୋଇ ଅନ୍ଧ ଜାଣିପୁ ସ୍ୱାର୍ଥକୁ ଗନ୍ଧି
ଉପେକ୍ଷଇ, ନିନ୍ଦାମାତ୍ର ହୁଅଇ ସାର ।
ଜାଣିପୁ ମଙ୍ଗଳବିଧାନ
କରେ ନିଜ ସ୍ୱାର୍ଥ ଏଡ଼ି ତେଣୁ ମହାନ । ୧୨ ।

ଭଞ୍ଜବିହାର
୧୯୭୧ ମସିହା

ହାଲ ଠିକଣା (ଡଃ) କୁଞ୍ଜବିହାରୀ ତ୍ରିପାଠୀ
ପ୍ରଫେସରପଡ଼ା, ୧୪-୪-୯୩




*From the Journal of the Asiatic Society.*
*Vol. VIII, No. 4, 1966.*

# BANPUR COPPERPLATE INSCRIPTION OF SOMAVAMSI INDRARATHA

By Kunja Behari Tripathy

*(Received June 9, 1967)*

The inscription is recorded in three copperplates, the length and breadth of each plate being 10 8/ 0" and 7 7/10" respectively. The first side of the first plate and the second side of the third are not inscribed. So the second side of the first plate, both the sides of the second plate and the first side of the third plate bear the inscription under discussion. The second side of the first plate and the first side of the second plate each contains 18 lines. The second side of the second plate and the first side of the third plate contain 19 and 16 lines respectively So altogether the inscription consists of 71 lines. Each letter has approximately a length of 3/10" and a breadth of 2/10".

The three plates are held together by a ring which passes through holes made at the left side of the plates at the centre. The ends of the ring are welded by a mass of copper which bears on it a seal with what appears to be a 'Gaja-Laksmi' figure.

The charter was unearthed while digging for the foundation of the Banpur College premises in the district of Puri. The place of discovery is about five miles from the Chilka Lake in Orissa on the east coast of India. When my attention was drawn to the discovery of the charter

by Sri Syam Sundar Misra, Principal of the College, I inspected the site on 15.9.1963 and found that the charter was partly illegible because of rust. From 22.9.1953 up to 12.6.1966, the charter remained in the custody of the late Godavaris Mahapatra, a member of the Governing Body of the Banpur College, and his son-in-law, Sri Kishore Chandra Misra. The latter made over the plates to me on 12.9.1965. The charter was cleaned in the Chemistry Laboratory of the Ravenshaw College by Sri Rabindra Nath Nanda, M sc, with the approval of Dr. M. C. Rout, the head of the said department. Kumari Ketaki Nayak of the Sailabala Women's College, Cuttack, devoted some time with me in deciphering the charter and Sri Rajendra Prasad Mahanti, Lecturer, Ravenshaw College, Cuttack, helped me in preparing the copies suitable for the press. I am indebted to Kumari Nayak and all the above-mentioned gentlemen for their co operation.

The language of the inscription is Sanskrit, though a few typical Oriya words are embedded in the protion. The script of the record is what is ordinarily called Kutila but which may be called proto-Oriya (or proto-Bengali after Buhler), the letters having horizontal stop strokes. The script may also be called Gaudi after Dr. D. C. Sircar. The charter is dated in the sixth regnal year of *Maharajadhiraja* Indradeva and belongs to the first half of the eleventh century A.D.

The charter begins with a verse invoking Lord Siva. This is followed by four other stanzas describing the city of Yajati-nagara which is ordinarily identified with modern Jajpur on the river Vaitarani in the district of Cuttack. The next five verses describe the ancestry of Indraratha, the donor of the grant under discussion The dynasty is traced to the moon and is stated to have produced in due course King Bhima who had a queen named Durga. The next four

verses recount the birth of Indraratha as the son of Bhima with his two younger brothers, viz. Bankaratha (Vakraratha) and Sankararatha. Indraratha is said to have got the royal fortune of Kalinga, because he was a favourite of Dharmaratha. We know from other records of the dynasty that Dharmaratha was also the son of Bhimaratha. It is obvious, therefore, that the mother of Dharmaratha was the eldest queen of Bhimaratha and that Dharmaratha and Indraratha were brothers though born of different queens. It is also said that he defeated in battle an Udra king and got possession of his kingdom by strength of his arms. In the next *sloka*, there is reference to a king called Vatsaraja and to another named Abhimanyu. In the following verse, we are told that Abhimanyu was destroyed by him, along with his high officers, in the battlefield and was thus deprived of his illegal possessions. It appears that this Abhimanyu was the father of Candihara Yajati who succeeded Indraratha as is known from other records. Though Indraratha was a powerful king and bore the title of *Maharajadhiraja* and patronized art and architecture, yet, while offering valiant resistance to Rajendra-cola, the famous Cola monarch of South India, he is said to have been defeated and killed. Rajendra-cola refers to his victory over Indraratha in his inscriptions. The battle between Indraratha and Rajendra-cola took place between about A. D. 1023 and A.D. 1030. We know that Rajendra-cola reigned from A D. 1012 to A D. 1044.

The defeat of the Somavamsi monarch Indraratha by Rajendra-cola had no permanent effect on the history of Orissa because, after the reign of Indraratha, Orissa was ruled by Yajati mentioned adove as we know from his copperplates. So far we had no inscription of Indraratha The present charter thus offers valuable help in regard to the

identity of Indraratha and his place among the Somavamsi kings of Orissa.

The charter registers the gift of a village called Lapukumbha to the Brahmanas. The village was situated in the subdivision of Khallakhaṇḍs in the district of Thorana which belonged of Kongoda-mandala. The word *Lapu* may perhaps be derived from *alavu* (gourd). Literally, the name refers to a village where gourds are used as pitchers. The expression Khallakhanda indicates an area which is rather shallow or marshy. In modern Oriya, the word *khalla* appears as *khala*. The lake Chilka and its surrounding region is definitely a shallow and marshy region. The district of Thorana is also mentioned in the Khurda copperplate grant of Madhava, which belongs to a date not later than the seventh century A.D. That grant registers the gift of the village Kumbharache in the district of Thorana. I have not been able to identify the village as yet. The writer of the charter was Amrta Candra and it was engraved by a smith called Heruka. Sri Kedaranatha Mahapatra of the State Museum, Bhubaneswar, draws my attention to a village called Sorana which might be a corruption of Thorana.

The prose portion of the charter enumerates a number of interesting taxes from which the gift land is made immune, the names of some of the officers, such as *Samahartr, Sannidhatr*, etc., occur in the *Arthasastra*. Some of the taxes enumerated, such as *andharua, pratyandharua, chittola*, etc. still defy interpretation.

The prose portion of the charter is immediately followed by 12 imprecatory verses quoted from religious texts. The charter altogether consists of 31 verses and two prose passages.

## REFERENCES

Chronology of the Bhaumakaras and the Somavamsis of Orissa, by Dr. K. C. Panigrahi, 1961.

Bharatiya Vidya Bhavan's History of Culture of the Indian People, Vol. V, Bombay, 1957 (Section by Dr. D. C. Sircar).

Dynasties of Mediaeval Orissa, by B. Mishra, 1933, Calcutta, pages 66-73.

Archaeological Remains at Bhubaneswar, by Dr. K. C. Panigrahi, pages 89 and 249.

Balijhari (Narasingpur) copperplate of Somabamsi Udyatokesari Mahabbhavagupta.

Indian Historical Quarterly, Vol. XXXV, No 2 (June 1959).

History of Orissa, Vol. I—Dr. H. K. Mahatab.

'The Kesari Dynasty of the Madalapanji'—P. Acharya. J.A S, Vol. IV, No. 1, 1962.

## A BRIEF SUMMARY OF THE ARTICLE ENTITLED BANPUR COPPERPLATE INSCRIPTION OF SOMAVAMSI INDRARATHA

The newly-discovered charter engraved on three copperplates and deciphered for the first time by the author glorifies the Somavamsi monarch named Indraratha who granted a village to the Brahmanas in the district of Puri near the Chilka Lake. The document is written in Sanskrit verses in various metres. In the grant portion written in Sanskrit prose, the categories of officers enumerated and the list of taxes from which the gift-village is made immune are interesting. Some of these have not yet been properly interpreted. The charter offers valuable addition to our knowledge of Somavamsi history. It belongs to the first-half of the eleventh century.



# ପରିଶିଷ୍ଟ--୩

## ଡ଼ଃ କୁଞ୍ଜବିହାରୀ ତ୍ରିପାଠୀଙ୍କ ରଚନାପଞ୍ଜି

### ଗ୍ରନ୍ଥ :

(କ) ଇଂରାଜୀ :

1. The Evolution of Oriya Language And Script
   Utkal University, Cuttack (1962)
2. A Brief History of Oriya Literature
   Bijoy Book Store, Berhampur (1972)
3. A Brief Review of History of Oriya Literature
   Sahitya Akademi, New Delhi (1973)

(ଖ) ଓଡ଼ିଆ :

(i) କବିତା :

(୧) ପୁଷ୍ପାଞ୍ଜଳ — ଉମାଚରଣ ମହାନ୍ତି,
କଟକ ପବ୍ଲିଶିଂ ହାଉସ୍, ଗୃଢ଼ମଚୌକ, କଟକ (୧୯୫୭)

(୨) ବନ୍ଦନିକା — ରଣଜିତ ସିଂହ,
ବାଲୁବଜାର, କଟକ (ଦ୍ୱିତୀୟ ସଂସ୍କରଣ, ୧୯୭୧)

(୩) ବଳନ୍ତ କୁସୁମାଞ୍ଜଳ

(ii) ଆଲୋଚନା :

(୧) ସଂସ୍କୃତ ସାହିତ୍ୟ-ପ୍ରଥମ ଖଣ୍ଡ — ବାଣୀଭଣ୍ଡାର, କଟକ (୧୯୫୯)

(୨) ସଂସ୍କୃତ ସାହିତ୍ୟ-ଦ୍ୱିତୀୟ ଖଣ୍ଡ — ,, (୧୯୬୨)

(୩) ପ୍ରାଚୀନ ଓଡ଼ିଆ ଅଭିଲେଖ —
ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର

(୪) ଓଡ଼ିଆ ଭାଷା ଓ ଲିପିର ବିବର୍ତ୍ତନ (ଖୋଦିତ ଲେଖ ଉପରେ ଆଧାରିତ) — ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର (୧୯୮୪)

(iii) ସମ୍ପାଦନା :

୧ । ଧମ୍ମପଦ—କଟକ ଟ୍ରେଡ଼ିଂ କମ୍ପାନୀ—୧୯୪୯
୨ । କୁମାର ସମ୍ଭବମ୍ (୫ମ ସର୍ଗ)—ବିଜୟ ବୁକ୍ ଷ୍ଟୋର, ବ୍ରହ୍ମପୁର
୩ । ଓଡ଼ିଆ ସାହିତ୍ୟ ସମୀକ୍ଷଣ—ଖଣ୍ଡକ୍ଷୀରୋଦ ମିଶ୍ର, ଆଲୋକ ସାହିତ୍ୟ ପ୍ରତିଷ୍ଠାନ, ଖଟବିନ୍ ସାହି, କଟକ—୮, ୧୯୬୩
୪ । ଭାଗବତ ସୂକ୍ତି ମୁକ୍ତାବଳୀ—୧୯୭୨
୫ । ପ୍ରାଚୀନ ଓଡ଼ିଆ ଗଦ୍ୟ ସଙ୍କଳନ—ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର, ୧୯୮୨
୬ । ଉତ୍କଳୀୟ କବି ବିଭୂତି (ନାଗରୀ ଲିପିରେ ଓଡ଼ିଆ କବିତା) ଡକ୍ଟର ଧନେଶ୍ୱର ମହାପାତ୍ରଙ୍କ ସହ ସମ୍ପାଦନା : ଉତ୍କଳ ନାଗରୀ ଲିପି ପରିଷଦ, ଗାନ୍ଧୀନଗର, କୋରାପୁଟ—୨୦, ୧୯୮୬

(iv) ପ୍ରଣୟନ :

ଆଞ୍ଚଳିକ ଶବ୍ଦକୋଷ, ପ୍ରଥମ ଭାଗ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ୧୯୭୪

## ପ୍ରବନ୍ଧ ;

### (କ) ଓଡ଼ିଆ :

୧ । ଉତ୍କଳର ସଂସ୍କୃତ ଅଳଙ୍କାର ଶାସ୍ତ୍ର—ନବଭାରତ—୧/୩ (ନୂତନ ପ୍ରସ୍ଥ) ୧୯୪୬—ପୃ ୧୧୫—୧୧୬

୨ । ଓଡ଼ିଆ ଭାଷାର ଶବ୍ଦତତ୍ତ୍ୱ ବିଚାର—ନବଭାରତ—୪/୧୧—ପୃ ୬୬୧—୬୮୦
" " —୪/୧୨—ପୃ ୮୬୧—୮୬୪
" " —୫/୬—ପୃ ୪୫୦—୪୫୨

୩ । ଶ୍ରୀ କୂର୍ମକ୍ଷେତ୍ର ଓ ତତ୍ରସ୍ଥ ଓଡ଼ିଆ ଶିଳାଲେଖ—ଝଙ୍କାର—ଏପ୍ରିଲ ୧୯୫୭

୪ । ମୁଖଲିଙ୍ଗମ୍ ଓ ତତ୍ରସ୍ଥ ଓଡ଼ିଆ ଶିଳାଲେଖ - ଝଙ୍କାର — ଜୁଲାଇ, ୧୯୫୭

୫ । ଦୁଇଟି ଅପ୍ରକାଶିତ ଶିଳାଲେଖ—ଝଙ୍କାର—ଏପ୍ରିଲ, ୧୯୫୭

୬ । ସଙ୍ଗୀତ ଶାସ୍ତ୍ରରେ ଧାନକୃଷ୍ଣଙ୍କର ବ୍ୟୁତ୍ପତ୍ତି - ଝଙ୍କାର — ଅକ୍ଟୋବର, ୧୯୫୭

୭ । କପିଳେଶ୍ୱର ଦେବଙ୍କ କୌଳନ୍ୟ—ଝଙ୍କାର—ଜୁନ, ୧୯୫୮

୮ । ରେଭେନ୍ସା କଲେଜ ପ୍ରାଙ୍ଗଣସ୍ଥ ପ୍ରାଚୀନ ଶିଳାଲେଖ—ଝଙ୍କାର— ମଇ, ୧୯୫୯

୯ । ଭକ୍ତକବି ଜଗନ୍ନାଥ ଦାସଙ୍କ ଭାଷାର ବୈଶିଷ୍ଟ୍ୟ—ଝଙ୍କାର— ଏପ୍ରିଲ, ୧୯୬୭

୧୦ । ସୋମବଂଶୀ ମହାରାଜାଧିରାଜ ଇନ୍ଦ୍ରରଥଙ୍କର ବାଣପୁର ତାମ୍ରଶାସନ —ଝଙ୍କାର—ଜାନୁୟାରୀ, ୧୯୬୭

୧୧ । ମହାରାଜ ରଣଭଞ୍ଜ ଦ୍ୱିତୀୟଙ୍କ ଅପ୍ରକାଶିତ ଦେଓଗାଁ ତାମ୍ରଶାସନ— ଝଙ୍କାର—ମଇ, ୧୯୭୪

(ସହ ଲେଖକ—ଡଃ ନଗେନ୍ଦ୍ର ନାଥ ପ୍ରଧାନ)

୧୨ । ଗୋଟିଏ ପ୍ରାଚୀନ ଓଡ଼ିଆ ଶିଳାଲେଖ — ଝଙ୍କାର — ଏପ୍ରିଲ, ୧୯୭୯

୧୩ । ଓ୍ୱାରଙ୍ଗଲ ଦୁର୍ଗର ଓଡ଼ିଆ ଅଭିଲେଖ—ଝଙ୍କାର—ଏପ୍ରିଲ, ୧୯୮୦

୧୪ । ଉରୁଜାଂ ଗ୍ରାମ ଶିଳାଲେଖ—ଝଙ୍କାର—ଫେବ୍ରୁୟାରୀ, ୧୯୮୪

୧୫ । ବିଲାତରେ ଓଡ଼ିଆ ପୋଥି—ସମାଜ- ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟା— ୧୯୫୩ — ପୃ ୭୨ — ୭୫

୧୬ । ହରଶଙ୍କର ତୀର୍ଥ ଓ ତତ୍ରସ୍ଥ ଶିଳାଲେଖ — ସମାଜ — ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟା — ୧୯୫୨ — ପୃ ୫୫—୫୬

୧୭ । ଆମ ଘର ପୋଥି — ସମାଜ — ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟା — ୧୯୫୯, ପୃ ୪୭ — ୪୮

୧୮ । ମହାନ୍ତ ଶବ୍ଦର ଭାଷାତାତ୍ତ୍ୱିକ ସମୀକ୍ଷଣ — ସମାଜ — ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟା — ୧୯୭୦, ପୃ ୪୪, ୪୮

୧୯ । ସୂର୍ଯ୍ୟବଂଶୀ ପୁରୁଷୋତ୍ତମ ଦେବଙ୍କ ରାମେଶ୍ୱର ଶିଳାଲେଖ — ସମାଜ — ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟା — ୧୯୯୨, ପୃ ୨୧

୨୦ । ଗୋପବନ୍ଧୁଙ୍କ ଲେଖାରେ ସଂସ୍କୃତ ସାହିତ୍ୟର ପ୍ରଭାବ — ସମାଜ — ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟା

୨୧ । ମହାରାଜ କପିଳେଶ୍ୱର ଦେବଙ୍କର ବୋଲଗଲ୍ଲା ଦ୍ୱୈଭାଷିକ ତାମ୍ର ଶାସନର ଓଡ଼ିଆ ଅଂଶ—କୋଣାର୍କ— ୧/୧, ୧୯୫୮ ପୃ ୯୫ — ୯୭

୨୨ । ବୌଦ୍ଧଗାନ ଓ ଦୋହାର ଭାଷା — କୋଣାର୍କ — ୨/୨, ୧୯୬୦, ପୃ ୧ — ୪

୨୩ । ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖ — କୋଣାର୍କ — ୩/୩-୪, ୧୯୬୮, ପୃ ୯ — ୧୫

୨୪ । ନୈଷଧୀୟ ଚରିତମ୍ — କୋଣାର୍କ — କୋଣାର୍କ ୫୬ ସଂଖ୍ୟା — ୧୯୮୫, ପୃ ୭୨ — ୭୯

୨୫ । ପ୍ରାଚୀନ ଓଡ଼ିଆ ପଦ୍ୟ ସାହିତ୍ୟର ବାଣୀ ନିର୍ଦ୍ଦେଶ — କୋଣାର୍କ — ୮୪ ସଂଖ୍ୟା — ୧୯୯୨

(ସହ ଲେଖକ — ନବକିଶୋର ପୃଷ୍ଟି)

୨୬ । ବୈୟାକରଣିକ ରାଧାନାଥ — ଡଗର — ୨୪/୬, ୭, ୧୯୬୦-୬୧ ପୃ ୮୪ — ୮୭

୨୭ । ଭକ୍ତକବି ମଧୁସୂଦନଙ୍କ ଉପରେ ସଂସ୍କୃତ ସାହିତ୍ୟର ପ୍ରଭାବ— ଭକ୍ତମଧୁ ବିଦ୍ୟାପୀଠ — ଶତବାର୍ଷିକୀ ସଂଖ୍ୟା

୨୮ । ଉତ୍ତର ଭାରତ ତୀର୍ଥ ଭ୍ରମଣ — ଉତ୍କଳ ସାହିତ୍ୟ

୨୯ । ମୋର କଲେଜ ଜୀବନ — ଅଧୁନା

୩୦ । ଘନକୃଷ୍ଣଙ୍କ ବୋଲି — ଓଡ଼ିଆ ସାହିତ୍ୟ ପରିଷଦ ମୁଖପତ୍ର

୩୧ । ଗବେଷଣା ଓ ଗବେଷଣା ପତ୍ରିକା — ଓଡ଼ିଆ ଗବେଷଣା ପରିଷଦ, କଟକ, ୧୯୮୨

୩୨ । ଧନକୃଷ୍ଣଙ୍କ ଭାଷା – ସପ୍ତର୍ଷି – ଜାନୁୟାରୀ – ୧୯୭୩

୩୩ । ଉପେନ୍ଦ୍ର ଭଞ୍ଜଙ୍କ ଶବ୍ଦ ପାଣ୍ଡିତ୍ୟ –
ଭଞ୍ଜପ୍ରଭା – କଟକ – ୧୯୫୩, ପୃ ୪୯ – ୫୨

୩୪ । ପଶ୍ଚିମବଙ୍ଗର ଗଗନେଶ୍ୱରରେ ଥିବା ପ୍ରାଚୀନ ଓଡ଼ିଆ ଶିଳାଲେଖ :
ଡଗର ୨୬/୨, ୩, କଟକ, ୧୯୬୨ ପୃ ୨୨ – ୨୪

୩୫ । ରେଭେନ୍ସା କଲେଜ ଅଧ୍ୟାପକ ମଣ୍ଡଳୀଙ୍କ ଓଡ଼ିଆ ସାହିତ୍ୟକୁ ଦାନ :
ରେଭେନ୍ସା କଲେଜ ଶତବାର୍ଷିକୀ ସ୍ମରଣିକା – ୧୯୬୮ –
ପୃ ୬୧ – ୬୨

୩୬ । ଜଗନ୍ନାଥ ଦାସ – ସମ୍ବଲପୁର ବିଶ୍ୱବିଦ୍ୟାଳୟ ପତ୍ରିକା ୧/୧
୧୯୬୮ – ୬୯ ପୃ ୬୩ – ୭୦

୩୭ । କୃଷ୍ଣା ଜିଲ୍ଲାରେ ସୂର୍ଯ୍ୟବଂଶୀ ଗଜପତି ଅଭିଲେଖ –
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗ
ରଜତ ଜୟନ୍ତୀ ସ୍ମରଣିକା – ୧୯୯୧ – ୯୨

୩୮ । ଶ୍ରୀ ଲିଙ୍ଗରାଜ ମନ୍ଦିରର ଶିଳାଲେଖ – ଏକାମ୍ର କ୍ଷେତ୍ର –
ଉତ୍କଳ ପାଠକ ସଂସଦ ଗ୍ରନ୍ଥ – ୧୯୯୩

ହିନ୍ଦୀ :

(୧) ଓଡ଼ିଆ ଭାଷା – ରାଷ୍ଟ୍ରଭାଷା ରଜତଜୟନ୍ତୀ ଗ୍ରନ୍ଥ, କଟକ
୧୯୬୧ ପୃ ୫୧ – ୬୪

(୨) ଓଡ଼ିଆ ଲିପିତତ୍ତ୍ୱ – ,, ପୃ ୬୫ – ୭୨

(୩) ଓଡ଼ିଆ ଭାଷା – ସଚିତ୍ର ଓଡ଼ିଆ ସାହିତ୍ୟ ୧/୫ ଜୁନ, ୧୯୭୨
ପୃ ୩୪ – ୩୯
୧/୬ ପୃ ୪୪ – ୪୭
୧/୭ ପୃ ୩୬ – ୪୨



(ଖ) ଇଂରାଜୀ

1. An early Oriya Inscription, Dated the 8th year of King Bhanudeva at Simhachalam near Waltair, O.H R.J. Vol-I Page 200-202, 1952.

2. A Brief Sketch of Oriya Language – Ravenshaw College Magazine 1954.

3. Inscription of Lingaraj Temple – Ravenshaw College Magazine 1956.

4. The 19th Anka year Inscription of Kapqkesvara Deva of the Puri Jagannath Temple, I. H. Congress Proc3edings, 19th Sessions, 1956.

5. The chronicle of Jagannath Temple, Puri, I H. Congress. Proceedings, 20th Sessions, 1957.

6. The Malebennuru Inscription of Virabhadra, O.H R.J. Vol. VII-1958.

7. The unpublished Sonepur Oriya Inscription of the time of King Bhanudeva—Indian Linguistics Vol. XVII, Poona 1957.

8. Western Oriya Dialect, Indian Linguistics Vol XVIII, Poona 1957.

9. The Onclitic Definitive—'ti' is in Oriya, Indian Linguistics, Turner Jubilee, Vol-II, 1959.

10. The Monosyllabic particles (Nipatas) in Oriya, Linguistic Circle—Delhi University.

11. Raghu's Campaign of Conquest, Jcurnal nf Vikram University, Ujjain (Kalidas special No. 1961)

12. Southern Oriya – Orissa Historical Research Journal Vol. X 1962 No. 4.

13. The Geography of India in Kalidas with special reference to Raghu's Compaign of Conquest, OHRJ Vol XI, 1963.

14 Perso – Arabic Influence in Oriya (Jointly with B. Mohanty) O.H.R.J. Vol. XV.

15. A study of some (about 40) Tadbhava and Desaja words of Rajsekhar's Karpuramanjari. International Oriental Congress, New Delhi.

16. A Study of some Important Prakrit words of Kalidas (Submitted to Sanskrit Visva Parishad, Bangalore session 1966) Revised article read at Kalidas Samaroha-Ujjain-1970.

17. Banapur Copperplate Inscription of Somavansi King Indrarath, Journal of Asiatic Society, Vol-VIII No. 4, 1966, Calcutta.

18. A study of some interesting works of the Banapur Sanskrit Copperplate Inscription of the Somavansi King Indrarath, Bharati, Utkal University Journal, Humanities Vol-I, 1967, Bhubaneswar.

19. Jagannath Das, Sambalpur University Journal 1967-68 Vol-I, No. 1, Sambalpur.

20. Prakrit and Oriya – Proceedings of the Prakrit Seminar, Poona (Under the directions of Dr. Dandekar) 1969-70.

21. The contribution of Utkal to Sanskrit Literature All India Oriental Conference, Srinagar.

22. Sanskritisms and Quasi Sanskritisms in Jagannath Das's Bhagavata. All India Oriental Conference.

23. Euphemism in Oriya (Jointly with K. Mohapatra) All India Oriental Conference, Gauhati, 1967.

24. The Inscriptions of the Sun-temple of Konarka. All India Oriental Conference, Jadavpur, 1969.

25. The Oriya Desaja Vocabulary Vis-a-Vis the Dravidian Languages especially Telugu. All India Oriental Conrerence, Ujjain, 1972.

26. Sri Jagannath Cult and its History. Sri Jagannath Smaranika. Vol. II. New Delhi-31-12-1972.

27. The Oriya and Telugu Languages some common features—The Second All India Dravidian Linguistics Conference, Tirupati-1972.

28. The asseverative particle 'ର' in Easter Indo Aryan Languages—All India Oriental Conference, Kurukshetra, 1974.

29. A study of Tadbhava and Desaja words in the Sanskrit, Copperplate of Udaya Khedi, All India Oriental Conference, Dharwar- 976.

30. Progressive Dravidianisation in Indo Aryan. All India Oriental Conference-1978.

31. Folk element in the Ramayan. International Folklore Conference, Cuttack-1978.

32. Desaja words in Hindi : Parallel in Oriya—All India Oriental Conference, Jeypore-1982.

33. Charyapada and its Language. All India Oriental Conference, Viswa Bharati.

34. Sidheswara Inscription Narasinha Deva IV Epigraphica India, Vol. XXIX (Jointly with Dr. D. C. Sircar)

35. The Subjunctive in Oriya-OHRJ Vol-VIII.

36. Oriya Bhasa—Rastra Bhssa Rajat Jayantigrantha, Cuttack.

37. Oriya Lipi Tattva—Rastra Bhasa Rajat Jayantigrantha, Cuttack.

38. A Burmese palmleaf Manuscript in Orissa, OHRJ. Vol-XXII, No. 2.

39. The Ganjam plate of Maharaja Udayakhedi. A Linguistic study of some words.

40. Editing of Inscriptions—Eastern Regional Language Centre, Bhubaneswar—December 1981.

41. Dravidian Inscriptions of Orissa.

42. Study of the drama 'Shakuntalam, For social uplift. National Seminar-Sambalpur University 17- 4 82.

43. An unpublished Copperplate grant of Maharaja Ranaka, Udayakhedi—A Linguistic study.

44. Oriya Lexicography Encyclopaedia of Indian Literature.

45. Inscriptions of Orissa—The Bhasa Samiti Journal 1981 edited by Bhasa Samiti, Professorpada, Cuttack.

46 Sanskrit & Oriya inscriptions relating to Cuttack

47 Dr. A. B. Mohanty and Prachisamiti.